# ପରଶ


ଲେଖକ ଓ ପ୍ରକାଶକ

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

ଉର୍ଦ୍ଧିଗାପଡ଼ିଆ—କଟକ





ପ୍ରଥମ ସଂସ୍କରଣ

୧୯୩୭

କଟକ ମହାନଦୀ ପ୍ରେସରେ

ଶ୍ରୀ ରାଧାକୃଷ୍ଣ ସାହୁଙ୍କଦ୍ୱାରା ମୁଦ୍ରିତ

ମୂଲ୍ୟ ଟ ୦।        ଚାର୍ ଅଣା

# ପ୍ରବେଶିକା



ସଂସ୍କୃତରେ ଗୋଟିଏ ବଚନ ଅଛି—

"ତସ୍ୟ କବିତସ୍ୟ କିଂବା ତସ୍ୟ ବନିତସ୍ୟାଥବା
ପଦବିନ୍ୟାସମାତ୍ରେଣ ଯସ୍ୟ ନାପହୃତଂ ମନଃ ।"

—ଯେଉଁ କବିତାର ପଦ ଯୋଜନାରେ ମାଧୁର୍ଯ୍ୟ ନାହିଁ, ତାହା ପାଠକର ଚିତ୍ତକୁ ସହଜରେ ମୁଗ୍ଧ କରିପାରେ ନାହିଁ; ସେହିପରି ଯେଉଁ ବନିତାର ପଦସଂଚରଣ ଭଙ୍ଗୀରେ ଲୀଳାୟିତ ମାଧୁରୀ ନାହିଁ, ସେ ମଧ୍ୟ ଦର୍ଶକର ହୃଦୟକୁ ସହଜରେ ଆକୃଷ୍ଟ କରିପାରେ ନାହିଁ । ଏହି ଉକ୍ତି ଅନୁଯାୟୀ 'ପରଶ'ର କବିତାଗୁଡ଼ିକୁ କିଏ କିପରି ଭାବରେ ଗ୍ରହଣ କରିବେ, କହିପାରୁ ନାହିଁ । ମାତ୍ର ଏହା କହିବା ସଙ୍ଗେ ସଙ୍ଗେ ମୋର ଏଠାରେ ମନେ ପଡ଼ୁଛି—ଆମେରିକାର ଅବହେଳିତ କବି ହ୍ୱିଟ୍‌ମ୍ୟାନ (Walt Whitman) ଙ୍କ କବିତା କଥା । ହ୍ୱିଟ୍‌ମ୍ୟାନ୍ ତାଙ୍କ ସମଗ୍ର ଜୀବନ କେବଳ କବିତା ଲେଖିଛନ୍ତି ଓ ପତ୍ର ପତ୍ରିକାରେ ମଧ୍ୟ ସେସବୁ ପ୍ରକାଶ ପାଇଛି । ସେ ସବୁରେ ଛନ୍ଦର ମଧୁର ଆବେଶ ନାହିଁ କିମ୍ବା କବିତ୍ୱର ସାବଲୀଳ ରସାଳତା ନାହିଁ । ଯେଉଁମାନେ ତାଙ୍କର Leaves of Grass ପଢ଼ିଛନ୍ତି, ସେମାନେ ଏହା ଅନୁଭବ କରିଥିବେ । ଫଳରେ ସମାଲୋଚକମାନେ ତାଙ୍କୁ ନାନା ଭାବରେ ବର୍ଷ ବର୍ଷ ଧରି ନିର୍ଯାତିତ କରିଛନ୍ତି । ଏବେ ବିପକ୍ଷ ପ୍ରତିକୂଳତା, ଏବେ ଲାଞ୍ଛନା, ତଦ୍‌ରୂପ ସତ୍ତ୍ୱେ, ହ୍ୱିଟ୍‌ମ୍ୟାନଙ୍କ କବିତାର ଆଦର୍ଶରେ ତିଳେ ହେଲେ ପରିବର୍ତ୍ତନ ଆସି ନାହିଁ । ଶେଷରେ କଳା-ରାଜ୍ୟର ଶ୍ରେଷ୍ଠତମ

ଗଦ୍ୟ-କବି ( prose-poet ) ବିଶେଷଣରେ ଅମର ଇମର୍‌-ସନ୍‌ ଯେଉଁଦିନ ହ୍ୱିଟ୍‌ମ୍ୟାନଙ୍କ କବି-ପ୍ରତିଭାର ବିଶ୍ଳେଷଣ କରି ତାଙ୍କ କବିତାସମୂହର ସମୁଚ୍ଚ ଭାବ ଓ ମହତ୍ତ୍ୱ ଜଗତକୁ ଦେଖାଇ-ଦେଲେ, ସେହି ଦିନରୁ ସମାଲୋଚକମାନଙ୍କର ତୀକ୍ଷ୍ଣ ଅଭିଧାର କ୍ରମେ ଅବନତ ହୋଇ ଆସିଲା । ହ୍ୱିଟ୍‌ମ୍ୟାନ୍ ଶେଷ ଜୀବନରେ ତାଙ୍କ କବିତା ଓ କବିତ୍ୱ ପାଇଁ ଯତ୍‌କିଞ୍ଚିତ୍ ଅମୃପ୍ରସାଦ ଲାଭ କରିଛନ୍ତି । ହ୍ୱିଟ୍‌ମ୍ୟାନ୍ ଆଉ ଜଗତରେ ନାହାନ୍ତି । ମାତ୍ର ଏବେ ତାଙ୍କ ପ୍ରତିଭାର ପ୍ରକୃତ ପୂଜା ଆରମ୍ଭ ହୋଇଛି—ପୃଥିବୀର ଶ୍ରେଷ୍ଠ କବିମାନଙ୍କ ମଧ୍ୟରେ ତାଙ୍କ ଆସନ ଅସପତ୍ନ ବୋଲି ଏବେ ଅବିସମ୍ବାଦରେ ସ୍ୱୀକୃତ ହୋଇଛି ।

ମୁଁ ଏଠାରେ ବିଶ୍ୱ-କବି ହ୍ୱିଟ୍‌ମ୍ୟାନ୍ ବା ତାଙ୍କ କବିତା ଗ୍ରନ୍ଥ ସହିତ ଲକ୍ଷ୍ମୀନାରାୟଣ ବାବୁ ବା 'ପରଶ'ର କୌଣସି ତୁଳନା କରି-ବାକୁ ଯାଉ ନାହିଁ । କେବଳ କବିତା-ରାଜ୍ୟରେ ଉଭୟ କବିଙ୍କ ଭାଗ୍ୟର ସାମଞ୍ଜସ୍ୟହିଁ ଦେଖାଇ ଦେବାର କଥା । ଭଗବାନଙ୍କ ଶୁଭ ଇଙ୍ଗିତରେ 'ପରଶ'ର କବି ତାଙ୍କ କବି-ଭାବର ଶୋଭନ ସମ୍ମାନ ଯଥାକାଳରେ ଲାଭ କରିବାର ସୌଭାଗ୍ୟ ପାଆନ୍ତୁ, ଏହାହିଁ କାମନା ।

ବଡ଼ ବଡ଼ ଚିନ୍ତାଶୀଳ ଓ କବିଙ୍କ ମତରେ ଜଗତର ପ୍ରାୟ ସମସ୍ତେ କବି ଓ ସମସ୍ତଙ୍କ ହୃଦୟରେ କବିତ୍ୱର ଉପାଦାନ ଅଛି—କେବଳ ତାହାକୁ ପ୍ରକାଶ କରିବାର ଶକ୍ତି ସମସ୍ତଙ୍କଠାରେ ନ ଥାଏ । ତେଣୁ ଯେଉଁ ବ୍ୟକ୍ତି ଭାଷାର ନମନୀୟ ସୌନ୍ଦର୍ଯ୍ୟରେ ହୃଦୟର ଗୋପନ ଭାବରାଶିକୁ ରୂପାୟିତ କରିପାରେ, ସେହି କେବଳ ଆମ ଆଖିରେ କବିରୂପେ ପ୍ରତିଭାତ ହୁଏ । ଦୃଶ୍ୟମାନ ଜଗତରେ ଅହରହ ସଙ୍ଘଟିତ ଶତ ଶତ ସୁଖ-ଦୁଃଖ, ହର୍ଷ-ବିଷାଦ, ହାସ୍ୟ-କ୍ରନ୍ଦନର ଅନୁଭୂତି ଯେଉଁ କବିର ପ୍ରାଣକୁ ଯେତେ ଅଧିକ ପରିମାଣରେ ସ୍ପର୍ଶ

କରେ, ସେ କବି ସେତେ ବଡ଼ ଏବଂ ତାହାର କବିତା ଲୋକ-ସାଧାରଣଙ୍କ ଅନ୍ତରକୁ ସେହି କବିତାବଳି ପ୍ରତି, ତଥା ବିଶ୍ୱର ସୁଖ ଦୁଃଖାଦି କଠିନ କଠିନ ସମସ୍ୟାର ସମାଧାନ ପ୍ରତି ସେତେ ଅଧିକ ଭାବରେ ସହାନୁଭୂତିଶୀଳ କରାଏ । ଏହିଠାରେହିଁ କବି-ହୃଦୟର ସାର୍ଥକତା । ମୋର ବିଶ୍ୱାସ—'ପରଶ'ର ଲେଖାମାନ ଏହି ଦୃଷ୍ଟିରୁ ପାଠକମାନଙ୍କ ନିକଟରେ ଆଦର ପାଇବା ଉଚିତ ।

'ପରଶ'ର କବିତାମାନଙ୍କରେ ଛନ୍ଦର କୌଣସି ଧାରାବାହିକ ଗତି ନାହିଁ, କିମ୍ବା ଭାଷା-ବିଳାସର ସେପରି କୌଣସି ମାଦକତା ନାହିଁ—'ପରଶ' ନାମ ପାଇଥିଲେହେଁ ପଢ଼ିବା ମାତ୍ରେ ଏହା କାହାରି ହୃଦୟକୁ ହଠାତ୍ ସ୍ପର୍ଶ କରି ଚଞ୍ଚଳ କରି ପକାଏ ନାହିଁ । ମାତ୍ର ଲେଖକଙ୍କ କବି-ହୃଦୟ ଯେ ସୃଷ୍ଟିର ନିତ୍ୟଦୃଷ୍ଟ ଘଟନାବଳୀର ଦ୍ୱନ୍ଦ୍ୱରେ ସତତ ଜୀବନ୍ତ ଭାବରେ ବିଜଡ଼ିତ ରହିଅଛି, ତାହାର ପ୍ରମାଣ ଓ ପରିଚୟ ଏଥିର ପ୍ରତ୍ୟେକ ଛନ୍ଦରୁ ମିଳେ । ତାଙ୍କର ପ୍ରାଣ କେତେ-ବେଳେ ହର୍ଷ ସୁଖର ଅନୁଭୂତିରେ ବିହ୍ୱଳ ହୋଇ ଯାଇଛି, କେତେବେଳେ ଅନ୍ୟର ଦୁଃଖ କ୍ରନ୍ଦନରେ ବ୍ୟଥିତ ହୋଇ ସମ-ବେଦନାରେ କାତର ହୋଇ ପଡ଼ିଛି, ପୁଣି କେତେବେଳେ ବା ଲାଞ୍ଛିତ, ଦଳିତର ଅପମାନ ସହି ନ ପାରି ନିଜର ଅଜ୍ଞାତରେ ବିଦ୍ରୋହୀ ହୋଇ ଉଠିଛି । ଏହିରୂପେ ଲେଖକ ସରଳ ଶିଶୁଟିର ତରଳ ହୃଦୟ ଯେପରି ସୃଷ୍ଟି କୋଳରେ ନିଜକୁ ଉତ୍ତରଳ ଭାବରେ ମୁକ୍ତ କରି ଦେଇ ଅଛନ୍ତି । ଯେତେ ନଗଣ୍ୟ ହେଉ ପଛେ, ଯେତେ-ବେଳେ ଯେଉଁ ଭାବ ତାଙ୍କ ଅନ୍ତର-ମୁକୁରରେ ପ୍ରତିବିମ୍ବିତ ହୋଇଛି, ସଙ୍ଗେ ସଙ୍ଗେ ସେହିଟି ସେ ତାକୁ ଭାଷାରେ ଧରି ରଖିବାର ପ୍ରୟାସ କରି ଅଛନ୍ତି—ଭଲ କି ମନ୍ଦ, ଏତେ କଥା ବିଚାରିବାର ଅବସର ସେତେବେଳେ ତାଙ୍କୁ ମିଳି ନାହିଁ ।

ମୁଁ ଜାଣେ, ଗତ ବର୍ଷକ ମଧ୍ୟରେ ଲକ୍ଷ୍ମୀନାରାୟଣ ବାବୁ ଦୁଇ ସହସ୍ରରୁ ଅଧିକ କବିତା ଲେଖି ଅଛନ୍ତି । ସେଥିରୁ ଅଧିକାଂଶ ଅବା-ରବେ ଅଥବା କାଳକଣା ଜନ୍ମ ଅଳ୍ପଅରେ ଲେଖା ଯାଇଛି—ଗୁଲି ଯାଉଥିଲା ବେଳେ ବାଟ ମଝିରେ, ପଢ଼ୁଅ ମଧ୍ୟରେ, ଗଛତଳେ କମ୍ବା ଅପରିଚିତ ବା ଅର୍ଦ୍ଧ ପରିଚିତ କୌଣସି ବନ୍ଧୁଗୃହରେ । 'ପରଶ'ରେ ସେଥିରୁ କେତୋଟି ମାତ୍ର ସନ୍ନିବେଶିତ ହୋଇଅଛି । ଏଗୁଡ଼ିକ ଅପେକ୍ଷା ଅଧିକତର ସେବ୍ୟ ଓ ଶ୍ରାବ୍ୟ ଶତ ଶତ କବିତା ତାଙ୍କର ଅଛି । ମୋ ବିଶ୍ୱାସରେ, ସେଗୁଡ଼ିକୁ ଥରେ ମାର୍ଜିତ ତୁଳୀ ଦେଇ ଶୃଙ୍ଖଳାରେ ପକାଇ ତହିଁରୁ ଭଲ ଭଲ ଗୁଡ଼ିଏ କବିତା ବାଛି ଖଣ୍ଡିଏ କବିତା ପୁସ୍ତକ ସଂକଳନ କଲେ ସୁନ୍ଦର ହୁଅନ୍ତା । ଇତି ।

କୁମାର ପୂର୍ଣ୍ଣିମା
୨୯-୧୦-୩୬ } ଶ୍ରୀ କୃଷ୍ଣଚନ୍ଦ୍ର କର

## ଅଭିମତ

ଶ୍ରୀମାନ୍ ଲକ୍ଷ୍ମୀନାରାୟଣ ସାହୁଙ୍କ ରଚିତ 'ପରଶ' ନାମକ କବିତାସଂଗ୍ରହ ମୁଁ ପଢ଼ିଲି । ଲକ୍ଷ୍ମୀନାରାୟଣ ସ୍ୱାଧୀନ ଚିନ୍ତା ପାଇଁ ଉତ୍କଳରେ ବିଖ୍ୟାତ । ସେ ଯେତେବେଳେ ଯାହା କହନ୍ତି, ତାହା ଅନ୍ୟ ବ୍ୟକ୍ତିର ଅନାଦରଣୀୟ ହେବ ବୋଲି ସେ ଲଜ୍ଜିତ ନୁହନ୍ତି, କମ୍ବା ଅନ୍ୟର ଭ୍ରୂକ୍ଷେପଦ୍ୱାରା ଦବିଯିବା ତାଙ୍କ ପ୍ରକୃତି ନୁହେଁ । ତାଙ୍କ ମନରେ ଯେତେବେଳେ ଯେଉଁ ଭାବାବେଗ ଉଠିଅଛି—ସେ ତାହାକୁ ସାକାର କରି ଆମ୍ଭମାନଙ୍କ ଆଗରେ ରଖି ଦେଇଅଛନ୍ତି । ତାଙ୍କ ଶ୍ରେଣୀର କେହି ଭାବୁକ ତାକୁ ଆଗ୍ରହରେ ଗ୍ରହଣ କଲେ ଉତ୍ତମ, ଗ୍ରହଣ ନ କଲେ ମଧ୍ୟ ଉତ୍ତମ । ମନୁଷ୍ୟ ମନରେ ବେଳେ ବେଳେ ଘଟନାଚକ୍ରର ଯେଉଁ ଢେଉ ଉଠେ, ତାହା ପ୍ରକାଶ ନ କରିବା ପର୍ଯ୍ୟନ୍ତ ମନୁଷ୍ୟ ଅସ୍ୱସ୍ତି ବୋଧ କରେ । ତାଙ୍କ ମନର ଉଦ୍‌ବେଳ

ଭାବରାଶି ଗତାନୁଗତିକ କବିତାର ବେଳା ମଧ୍ୟରେ ଆବଦ୍ଧ ରହି-
ବାକୁ ଅସମର୍ଥ ହୋଇ ଯଥେଚ୍ଛା ଗତି କରିଅଛି । ଏ ଯଥେଚ୍ଛା-ଗତିରେ
ସ୍ୱାଧୀନତା ଅଛି, ମନୋହରତା ଅଛି ଓ ଏ ଗତିରେ ମାଦକତା ମଧ୍ୟ
ଲକ୍ଷିତ ହେଉଅଛି । ସ୍ୱାଧୀନ ଭାବରାଶି ସଂସ୍କାର-ଲହରୀମାଳା-
ବିଭୂଷିତ ହୋଇ ସେହି ଅମର-ବାଞ୍ଛିତ ଗୋନାହିକାରୁ ବାହାରି
ଭାବୁକର ମନଃକ୍ଷେତ୍ରରେ ଶାନ୍ତିବାରି ସେଚନ କରି କରି ବୈତରଣୀ
ରୂପେ ଜୀବନ-ସମୁଦ୍ରରେ ପଡ଼ିଅଛି । ଲକ୍ଷ୍ମୀନାରାୟଣଙ୍କର ସବୁ
ଲେଖାରେ ଯେଉଁପରି ବୈଶିଷ୍ଟ୍ୟ ଲକ୍ଷିତ ହୁଏ, ଏ କ୍ଷେତ୍ରରେ ମଧ୍ୟ
ତାହା ହୋଇଅଛି । ଏ କବିତାଗୁଡିକ ପଢ଼ିଲାବେଳେ ଭବ-
ଭୂତିଙ୍କର 'ଉତ୍ପତ୍ସ୍ୟତେଽସ୍ତି ମମ କୋଽପି ସମାନଧର୍ମା, କାଲୋହ୍ୟୟଂ
ନିରବଧିଃ ବିପୁଲା ଚ ପୃଥ୍ୱୀ' ଶ୍ଳୋକାଂଶ ମୋ ମନରେ ଉଦିତ ହେଲା ।
ଭାରତ-ସେବୀ ସାଧକଙ୍କ ସାଧନା ସିଦ୍ଧ ହେଉ । ସିଦ୍ଧିର ଫଳ
ହରିଜନ ଅନ୍ତ୍ୟଜ ବାଳକଠାରୁ ଆରମ୍ଭ କରି ଦେଶର ଆଶା
ଭରସାର ସ୍ଥଳ, ଦେଶସେବକ ଯୁବକ, ଭାରତ-ହିତୈଷୀ ଓ ଦେବ
ଭକ୍ତ ସବୁ ବ୍ୟକ୍ତିଙ୍କୁ ପରଶି ଅଛି ଏବଂ ସମସ୍ତେ ତାହା ଉପଭୋଗ
କରି ସୁଖୀ ଓ ଲାଭବାନ୍ ହୁଅନ୍ତୁ ।

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଆଶ୍ରମ
କଟକ
ତା ୩୦।୧୦।୩୬
ଗୋପାଲଚନ୍ଦ୍ର ପ୍ରହରାଜ

ଆଜି 'ପରଶ' ପଢ଼ିବାର ସୁଯୋଗ ପାଇଲି । ମୋର ମନରେ
ଅପୂର୍ବ ପରଶଟିଏ ଖେଳିଗଲା । ମୁଁ ଆଶାନ୍ୱିତ ହେଲି ।

'ପରଶର' କବିତା ଗୁଡିକ ସଂପୂର୍ଣ୍ଣ ନୂଆ ଧରଣର—ମୁକ୍ତ
କବିତା । ଏଥିରେ ଆଡ଼ମ୍ବର ନାହିଁ, ଚେଷ୍ଟା ନାହିଁ, କସରତ ନାହିଁ,
ଛନ୍ଦର ନାଗପାଶ ବନ୍ଧନ ନାହିଁ—ଅଛି କେବଳ ଅନିରୁଦ୍ଧ ଆବେଗ
ଓ ଉଚ୍ଛ୍ୱାସ—ପ୍ରାଣର ଛବି ଓ ଧ୍ୱନି, ଯାହା କହୁଛି କବିତାର ପ୍ରାଣ ।

କବିତା ପଢ଼ି କେହି କେହି ନାସିକା କୁଞ୍ଚନ କରିବେ ଏ ଆଶଙ୍କା ଖୁବ୍ ସୁଲଭ ବୋଲି ମନେ ହେଉଛି; ମାତ୍ର ଜୋର କରି କହୁଚି, ପାଠକ ହୃଦୟ ଦେଇ, ପ୍ରାଣ ଦେଇ ପଢ଼ିଲେ କବିତାଗୁଡ଼ିକରେ କବିତ୍ୱର ଆବିଷ୍କାର କରି ପାରିବେ । ସନ୍ଦେହ ନାହିଁ—'ପରଶ,' ଖାଲି ପରଶ ନୁହେଁ, ପ୍ରାଣେ ପ୍ରାଣେ ରେଖାପାତ କରିପାରିବ ନିଶ୍ଚୟ ।

ଅନୁଗୋଳ
୨୫।୧୦।୩୬ } ଶ୍ରୀ ରାଧାମୋହନ ଗଡ଼ନାୟକ

ଭକ୍ତିଭାଜନ ଲକ୍ଷ୍ମୀନାରାୟଣ ସାହୁ ମହୋଦୟଙ୍କ 'ପରଶ' ନାମକ କବିତାସଂଗ୍ରହ ପୁସ୍ତିକାକାରରେ ଦେଖିବାର ସୁଯୋଗ ପାଇ ଅଛି । ସାହୁ ମହୋଦୟ ଭାରତୀୟ ଜୀବନର ନାନା ବିଭାବ ବିଷୟରେ ଯେତେବେଳେ ଯଦୃଚ୍ଛା ଯାହା ଭାବି ଅଛନ୍ତି, ତାହା ତାଙ୍କର ବୈଶିଷ୍ଟ୍ୟ ରୁଚି ଅନୁଯାୟୀ ଏଥିରେ କେତେବେଳେ ଛନ୍ଦୋବାନ୍ ଓ କେତେ-ବେଳେ ବା ଛନ୍ଦୋହୀନ ସରଣୀରେ ପ୍ରକାଶ କରିଅଛନ୍ତି । ଏ ପୁସ୍ତିକାର ଅଧିକାଂଶ କବିତାରେ ତାଙ୍କ ସର୍ବଜନସୁଲଭ ଉଦାରତାର ସ୍ପଷ୍ଟ ମୁଦ୍ରା ଅଙ୍କିତ ରହିଅଛି । ତେଣିକି ମାତ୍ର ଏହି କବିତା ପୁସ୍ତିକାରେ ନମସ୍ୟ ଜନସ ।

କବିତା ରୂପେ ଏଗୁଡ଼ିକ ନବୀନ ଲେଖକମାନଙ୍କର ଆଦର୍ଶ ହୋଇ ନ ପାରେ । ସାହୁ ମହୋଦୟ ମଧ୍ୟ ଏ କବିତାଗୁଚ୍ଛ ପ୍ରକାଶ କରି ଯଶଃପ୍ରାର୍ଥୀ କବିରୂପେ ପରିଚିତ ହେବାକୁ ଆଗ୍ରହୀ ନୁହନ୍ତି । ସେ ମହୋଦୟଙ୍କ ଅନାବିଲ ଦେଶ-ପ୍ରୀତି-ମୂଳକ ଭାବରାଜି ପ୍ରଶସ୍ତ-ତର ସରଣୀରେ ଆତ୍ମପ୍ରକାଶ କରିବା ଦେଖିଲେ ଅଧିକ ସୁଖୀ ହେବି ।

କଟକ
ତା ୩୦।୧୦।୩୬ } ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ




—୧—

କି ପିଲା ତୁମେ ?

ଘାଣ ପିଲା ଅମେ ।

ଏହି କଥା ଶୁଣି ମନ ହୋଇଗଲା ମୋର ଦୁଃଖେ

କେତେ ଦିନ ଧରି ମା ଛେଉଣ୍ଡ ପରି ରହିଥିବ ସ୍ଥଗଘ ବା

କେହି କି ତାଙ୍କର ପାଇଁ

ଏତିକି ଭାବନ୍ତି ନାହିଁ

କିପାଁ ସେ ଜନମ ହୋଇ

ରହିବେ ଦୂରେ—ଦୂରେ ଅଛୁଆଁ ହୋଇ ?

ଲାଗଇ ପ୍ରାଣେ ଅଘାତ

ମରମ ହୁଏ ପୀଡ଼ିତ ।

ସୃଷ୍ଟିଅଡ଼େ ଯାହାଁ ଦଶ ଦିଗପାଳ

ପାଣିଚିଲା ଏ ରହିବ ପାଣି ଚିରକାଳ ?



— ୨ —

କୃଷ୍ଣ ମୋର ଭାଇ
ଅସୁଥିଲା ତରୁଣୀ ବୟସୁ ନେଇ
ଆଖି ଥିଲା ତାର ଛଳ ଛଳ
ସଜଳ ଜଳଦ ବରଣ ଭଲ ।

ପଚାରିଲି ତୁମେ କି ଘର ପୁଅ
କହିଲା ଥଙ୍ଗି ଥଙ୍ଗି ଶାମଲ ଘର ହୋ
ଓହ୍ଲାଇଲି ମୁହିଁ ସାଇକେଲରୁ
ଧରିଲି ଜାପଟି ଗଲା ତାହାରି
ବଳିଗଲା ସେ ସୁଖ କଅଁଳ ଫୁଲରୁ ।
ସେହି ମୋର ଭାଇ, ଅସୁଥିଲା ଛନ ଛନ ହୋଇ
ମୋର ପ୍ରେମ ପୁଲକ ପାଇ, ରହିଗଲା ଏକାବେଳକେ ବହ୍ୱଳ ହୋଇ ।

କୃଷ୍ଣ କୃଷ୍ଣ ଯେତେ ଥର ଡାକିଲି ସରବେ
ଉତ୍ତର ଦେଲା ସ୍ନେହେ ସଲଜେ କେତେ ସରାଗେ ।

ଘର ତାର ଡମକା
ଗଲା ସେ ଚାଲି ଜୁହାର ହୋଇ
ପ୍ରାଣ ରହିଗଲା, ମନ ରହିଗଲା ତାର ପାଶେ
ଅଟକିଲି ମୁହିଁ ବିଷର୍ଣ୍ଣ ହୋଇ
ବକୁଳ କୁସୁମ ଦଳପେ ହେଲଣି ଛଡ଼ା
ମନୋହର ଭାବନା କେବଳ ମୋ ଭାଇର କାହ୍ନରଡ଼ା ।



—୩—

ଅରୁଣ ଏବେ ଉଇଁ ନାହିଁ ଅମ୍ବର
କାକ ଏବେ ଭଲ କରି
ପକାଇ ନାହିଁତ ସ୍ବର
ନାଶିଏ ଅନ୍ଧାର ଉଠି ନାହାନ୍ତି ବାହାର
ବାହାରିଲି ମୁଁ ପଥେ,
ସାଥୀ ନାହିଁ କେହି ମୋହର
ଖାଲି ସ୍ମୃତି ଅଛି ତାହାର ।
ଶୀତଳ ମଳୟ ବହୁଛି ଧୀରେ
ଡାହୁକ ରାବଇ ବେତସ ପୁରେ
ମୁଁ ରହିଲି ସ୍ଥଗିତ ହୋଇ
ଅପଣାରେ ଚହିଁବା ପାଇଁ ।
ଉଦାସୀ ପ୍ରାଣେ ଶୁଣିବି ଏକା
ମରମରୁଥିବ ବୃକ୍ଷର ଶାଖା
ଧ୍ୟାନ କର ସେ ସ୍ମୃତିର ସୁଖ
ଭୁଲୁଥିବି ମନେ ଗୁଣି ତା ଦୁଖ
ପ୍ରଭାତ ମୋର ମଙ୍ଗଳ ହେଉ
ସେହିପରି ପୁଣି ମୋତେ ଦେଖା ଦେଉ ।



—୪—

କ୍ଷତ ଚିହ୍ନ ମୋ ହୃଦର
ସ୍ମରଣ କରାଇ ଦିଏ
ଦିନ ଦିନକର ଘଟନା ଜୀବନର ।

କେବେ ଯାଇଥିଲି
ଶିବାଜୀର ସେହି ଗିରି ଦୁର୍ଗ ଘୋର ବନରେ
ଆଘାତ ଲାଗିଥିଲା ପାଦେ,
କାହାର ବାଡ଼ିରେ
ଲୁହାର କଣ୍ଟାରେ
କ୍ଷତ ହୋଇଥିଲା ବଡ଼ ।
କେବେ ଓହ୍ଲାଇ ଥିଲି ଗଛରୁ
ପଡ଼ି ଯାଇ ରକ୍ତ ବୋହିଥିଲା ପାଦୁ
ଦେଖି ମୋ ଶୈଶବ ସଖୀରେ ।
କେବେ ଲଭିଥିଲି ଦାରୁଣ ରୋଗ
ଅସ୍ତ୍ର ଚିକିତ୍ସା ହୋଇଥିଲା ତହିଁ ପ୍ରୟୋଗ ।
କେବେ ବସନ୍ତର କେଉଁ ଅଭିସାରେ
ଯୌବନର କେଉଁ ଉନ୍ମତ୍ତ ଦବଦରେ
ଲଭିଥିଲି ଅନ୍ତରେ କେଉଁ ଜୀବନ କ୍ଷତ
ଗୋଟି ଗୋଟି ମନେ ତା ରହିଛି ଶତ ଶତ !
କ୍ଷତ ଚିହ୍ନ ମୋହର
ଘଟନା ଦିନ ଦିନକର
ଜଣାଇ ଦିଏ ଚେତାଇ ଦିଏ
ଚିହ୍ନିତ ପାଇଁର
ଛୁରୀରେ କେବେ ଯାଇଥିଲା କଟି
ଗୋଡ଼ ମୋହର
ହୋଇଥିଲି ଯେବେ ଖେଳେ ଗରଗର ।
କେବେ କେଉଁ ମର୍କଟ ଦେଇଥିଲା ଚୋବାଇ
ରହିଅଛି ଚିହ୍ନ ତାର ଦିଏ ସେ ଚେତାଇ

ନୁଅ ନୁଅ ସାବଧାନ
ଅକ୍ଷି ଉଦ୍ଘାଟନ ନୁଅ ସାବଧାନ
ଛିଡ଼ ନାହ୍ନ ମୋହର ପୂଜା ପୁଷ୍ପ ଉଳ
ତୁମେଁ ମୋ ପ୍ରାଣଦେବତା ତାହାଙ୍କୁ ଧର !





ନିଶୀଥରେ, କଳା ସେ ଅକାଶଦେହେ
ଯେତେକ୍ଷେ କୃଷ୍ଣ ମାତ୍ସରେ
ଫୁଟିଛି ଅର୍ଦ୍ଧମାନ୍ତ୍ରେ ବକୁଳ କମଳ
ସେ ଯେ ମୋ ଚନ୍ଦ୍ର, ମୋ ମନନୟନ-ଚକୋର ।୧।
ଉପବାସୀ ମୁହିଁ, ବ୍ରତ ଉଦ୍‌ଯାପି ହିଁ
ତନୁ କରି କ୍ଷୀଣ, ଉଦାସୀ ମୋ ମନ,
ବୁଲୁଛି ମୁଁ ସଂସାର ଯେତେ !
(ଅଛି) ଗହନ ହିଳେ, ତାରାର ସାଥେ
ମୋ ଚନ୍ଦ୍ରମା ଚକୋର, ବସିଛି ସ୍ଥିର
ନୟନ ମେଲି, ପଦ୍ମ ଯେ ଖୋଲି
ଧୀର ଶାନ୍ତ ଅତି, ଗ୍ରହିଁଛି ମୋ କଣ୍ଠ
ମୁହିଁ ଶାନ୍ତ ହେଲି ଏବେ
ଉଦାସୀ ପରାଣ ଭବେ ।୩।
ବାଳକ ମେଳେ, ବସିଛି ସେ ଯେ
ତାରକା ରାଜି ସଙ୍ଗରେ ଫୁଟୁଛି
ତହିଁ ଚନ୍ଦ୍ରମା ମୋର ଖେଳୁଛି ।୪।

ମଳୟ ପବନ ରହ ରହ, ଆସଇ ଦେଖ ଗୋ ବହ ବହ,
ପାଇଛୁ ଦରଶନ, ମୋ ପ୍ରିୟ ଦରଶନ,
ଚଉ ଏବେ ହୋଇଛୁ ଥିର, ଭାବନାଘରେ ତତ୍ତ୍ୱ ଗେ୍ହର
ରହିଛୁ ମୋତେ ଘେନି, ପ୍ରିୟ ଯେ ମୋର ସେହି ।୫।
ଶ୍ରାବଣ ରାତି, ଅଜ ବରଷି
ବାଜଇ ସ୍ୱନର, (ଅଜ) ଧନେ ଝରଝର, ଅନ୍ଧାର ସେ ଝଡ଼
କୋହେ ମୁହିଁ ଲଜାଇ ଶରୀର
ଛନ୍ନ ମୁହିଁ ହୁଏ ଯେ ଅଧୀର ।୬।
ଅହେ ଡାକବାଉ, ପେଶ ରହ ବନ୍ଧ,
ମୋର ଦୂତଅ ଶ୍ରନ୍ଦ, ପାଇ ମୁଁ ଯେ ଆନନ୍ଦ
ଭାବର ଘରେ,ଅସେ ସେ ଯେ ରେ
ବଧି ବାଦୁଡ଼ି, ଖାଏ ପିଜୁଡ଼ି
କରେ କେବେ କେବେ ଫଡ଼ ଫଡ଼
ଚତ୍ତ ମୋର ହୁଏ ଧଡ଼ ଧଡ଼ ।୭।
ଯାଇଛୁ ଶ୍ରକ୍ଷ, (ମୋ ପାଶୁ) ଯାଇନ ଶ୍ରକ୍ଷ
ସେ ଭାବୁଛୁ ବସି ମୋତେ, ତା ଶୃହାଣୀ ଦେଖ କେତେ ।୮।
ଅନନ୍ତ ଲୋଚନେ, ତାରକା ଗହଣେ
ସେ ଯେ ମୋତେ ଦୂରରୁ ଶୃହେଁ
ସ୍ନନ୍ଧ ହୋଇ ମୋତେ, ଅଖିରେ ସେ ଯେତେ
ରହି ରହି କେତେ କଥା ଯେ କହେ ।୯।
ମାଳମା ରାତେ, ତାର ସହାସେ, ଗୋଟି ଗୋଟି ହୋଇ ଶ୍ରହେଁ
ତାହାର ଅକ୍ଷି, ସହସ୍ର ସାକ୍ଷି, ମୋତେ ସେ ନୀରବେ କହେ ।୧୦।

ମିଳିଯାଏ ଯେ ରଜନୀ, ଅଳିବ ଉଷାର ସ୍ୱର୍ଣୀ
ନକ୍ଷତ୍ର ଯିବ ଲୁଚି, ମୋତେ ଯେ ନ ପୁଛି,
ଦିବସ ଯେବେ ଆସିବ ମେଲି,
ପ୍ରାଚୀର ଦୁଆର ମୁଁ ଦେବ ଖୋଲି
ଦେଖିବ ଖାତବ ଭୂବନ, ଅସିବ ଗୋ ମନୋମୋହନ
ଏହି ଆଶା—କୁମୁଦନୀ, କହେ ମନେ କୁହୁକିନୀ
ମିଳାଇ ମିଳାଇ ଯାଏ ଏବେ, ଗଗନେ ତାରକା ରହି ସବେ
ମିଳାଇ ମିଳାଇ ଯାଏ, ଦୂରରୁ ବିହଗ ଗାଏ ।୧୧।

ଭୁଙ୍କୁଟେର ରବ ଶୁଭଲାଣି ଏହି
ନଶୀଥ ଯିବ ମିଳାଇ ବାହିଁ
ମୋ ଆକାଶ ଶୂନ୍ୟ ଆକାଶେ ରହି
ଯିବ ସେ ଗୋ ଧୀରେ କେଉଁେ ମିଳାଇ ।୧୨

ମୋ ହାଥ ପାଶେ, ମୋ ମନ ପାଶେ, ସପନେ ପାଇ
ହରାଇବ ମୁଁ ତାକୁ ଜାଗରେ ଅଭାଗା ହୋଇ ।୧୩।

କି ସୁନ୍ଦର ନୀଳମା ଗଗନ-ସର
ମିଳି ମିଳି ଏବେ ତା ଯାଏ, ଶିର ଶିର ମଳୟ ବାଏ,
କାହିଁ ଉଠେ ଗୋ ଶିଶୁ ହୋଇ ଜାଗର ।୧୪।

ସେ ଦେଖିବ ଆଲୋକ, ହେବ ଆସେ ପୁଲକ
ଖାଲି କି ମୁହିଁ, ଉଦାସୀ ହୋଇ
ପୁଣି ଦିବସ ନେବ, ବନ୍ଧୁ ତାହାକୁ ଖୋଜିବ
ଆକାଶେ ଅନାଇ, ମୋ ହୃଦୟେ ଶୁହିଁ ? ।୧୫।

ଗତ ରଜନୀ, ଚନ୍ଦ୍ରମା ମଣି କଥା ଭାବୁଥିବ
ତାଙ୍କର ପ୍ରେମେ ଦେଲାଣି ଗର୍ବ, ଜୀବନ ମୋର ଏସନ ଲମ୍ବ
କାନ୍ଦ ମାତର, କାନ୍ଦ ଯେ ନାହିଁ ।୧୬।

ଶୁଖିଲା ଝର, ଶୁଖିଲା ନୀର
ଭାବନା-କ୍ଷୀଣ ଏହି ଶରୀର
ଝାସିବ ଜଳେ, ମୁଁ ନ ପାରିଲେ
ସ୍ୱପନେ ମିଶି ମୁଁ ବାରବାର ।୧୭।

ଏତକ ହେଲେ ଅଶରୀରୀ ହୋଇ ବୁଲିବ ଦେହ
ମୁଁ ମଧ କଲ୍ପେ ବୁଲିବ ଯାଇ, ଭୁଲିବ ଯାଇ ।୧୮।

ଦେଖା ହେବ ସେଠାରେ, ସେ ମୋ ଚନ୍ଦ୍ରମା ଚକୋର
ମୁଁ ପିଆସୀ, ସେ ପିଆସୀ
ମାଗୁଛୁଁ ଅମ୍ଭେ ଜଳ ପିଆସୀ ।୧୯।

ଶାନ୍ତ ସ୍ତବ୍ଧ ଧରଣୀରାଣୀ
ଚେତନା ସେ ପାଇବେ ଏଖଣି
ମୁଁ ହେବି ଏବେ ଚେତନା ହୀନ
ମୁଁ ଯେ ଅତୀବ ଭାଗ୍ୟହୀନ ।୨୦।

ସର୍ବଂସହା ଧରଣୀ, ସହେ ସେ ବୃନ୍ଦରାଣୀ,
କେତେ ଝଞ୍ଜା, ଭୂମିକମ୍ପ, ବାତ୍ୟାପାତ
ସହିବ ମୁଁ ତାଙ୍କ ସାଥେ ଦୁଃଖପୂର୍ଣ୍ଣ ।୨୧।

ଏବେ ଦିନ ଦିନ ଗଲା, ସପନ ମୋ ଦୂରେ ଗଲା,
ରହିଥାଉ ଦୂରେ, ମୋର ମରମରେ,
ଯାଉ ଯାଉ ଦୂରେ, ଗୃହକୁ ସ୍ନେହ ନେଇ
ସେ ଯେ ମୋର ଅମୂଲ୍ୟ ସମ୍ପଦ, ଛାଡ଼ି ମୁହିଁ ରହିବି ଅବାଦ ।୨୨।

ବାରବେ ମୁହିଁ ମାୟା ସବ
ହାରବେ ମୁହିଁ ଘର୍ଯ୍ୟ ସବ
କରବ କେଳ ହୋଇ ମୋହ
ପାଇବ ଅନଙ୍ଗ-ଅଙ୍ଗ ଯେବେ
ଜଡ଼ଯିବ ମୁହିଁ ପୁଣି ଗୋ ତେବେ
ନପୀଡ଼ ନପୀଡ଼, ରବେ ଭର ଭର ।୨୩।

ଥାଉ ମୋର ଜୀବନ ସେହି ଅଶାରେ
ନତ ଦେଖେ ସ୍ୱପନ ନଗିର ଭୋରେ ।୨୪।

ମିଳ ମିଳ ଗଲେ ତାରା, ବୋହିବ ସ୍ନେହକ ଧାରା
ସ୍ନେହକ ନାହିଁ ରେ, ତପତ ଶରୀରେ
ଉଦାସେ ଭୋଳ, ପାଉଁଶ ବୋଳ
ଯିବ ଗୋ ମୁହିଁ ସୁଅଡ଼େ ଚଳ ।୨୫।

ମୋର ମରମ ପୁରେ ଲୁଚ ରହ ଭୁ ଥାଅ ରେ
ଏଭଳି ଅଦରେ, ରଖ ହେ ସାଦରେ
ବନ୍ଧୁ ପଦେ ମିଳ, ରହୁଥିବା ଝୁଲ ।୨୬।

ଗଗନ ପଥେ ଉଡ଼ଗଲା ବହଗ
ସେ ଦେଏ ମୋହର ପ୍ରେମ ଭରା ସୋହାଗ
ଦେଖାଏ ସେ ବାରବାର
କାହିଁକ ମୁହିଁ ଦୁଃଖେ ଜୁର ?
ଚଉ କରବ ଏବେ ଉଦାସ ପ୍ରେମେ ଭରପୁର
ଯୋଡ଼ ଯୋଡ ହିନା ହେମ ଅଙ୍ଗ ହୁଏ ବର ସୁନ୍ଦର ।୨୭।

ପାହିଲା ଯେ ବଢ଼, ବାହାର ଝୁଙ୍କୁଛି,
ଏବେ ଆସିବ ଝଙ୍କାର
ରହିଁ ଥିବ ଦୂରେ, ମୋହ ଚିତ୍ତ ପୁରେ
ତୋତେ ମୁଁ ଧିଆନ କରି ।୨୮।



—୨—

ଗନ୍ଧେ ଭୋର

କେତକୀ, କଥ, ହୋସେନହେନା ମୋହର ।
ଫୁଟୁଛି ଫୁଲ ଛୁଟୁଛି ବାସ
ଡାକୁଛି କେତେ ଆସରେ ଆସ
ରସିକ କେହି ସନ୍ଧାନ ପାଇ
ଗଲାର ପାଶେ ଅଣଇ ଯାଇଁ
ନାହିଁ ମୋହର ସେହି ସମ୍ପଦ
ଚମ୍ପାଟିଏ କେହି ଦେଲେ ଅବା ଦୟା ବହି
ଗଣ୍ଠି ଧନ କରି ରଖୁଥାଏ ମୁହିଁ
ଟିକିଏ ଟିକିଏ ବାସ ଶୁଙ୍ଘଇ
ଗୋଲାପ ପାଖୁଡ଼ା ଝଡ଼ି ପଡ଼ିଥିଲା
ଉଠାଇ ଯତ୍ନେ ଅଞ୍ଚଳେ ବାନ୍ଧେ
ବାସି ହୋଇଗଲେ ଶୁଙ୍ଘୁଥାଏ ପୁଣି
ଶେଷରେ ହଏ ଖାଇ ମନ ନ ପାଏ ଯେବେ ଗନ୍ଧ
ଦୁଃଖୀରଙ୍କୀ ପରି
ପାଇବ ସେ ଧନ କାହିଁ ଅଞ୍ଜଳ ଭରି ?

ଗୋଟିଏ ହେଲେ ମିଳିଲେ କାହିଁ
ଅଶ୍ରୁଳନୟ୍ନ କରଇ ମୁହିଁ
ସେ ମୋ ମନ ନୟ୍ନ ସୁଖ-ପସରା
ଶୋକ ପାସୋରା !



—୨—

ସେହି ତୀର୍ଥେ ହେବ ଦେଖା ତୋହର ମୋହର
ହିନ୍ଦୁ ମୁସଲମାନ ଭେଦ ଯହିଁ ନାହିଁ, ଲେଖା କାଇପଦର
ମୋହର ଦେଶର ତୀର୍ଥ
ଖୋଜି ଖୋଜି ବାହୁଡ ପଥ
ଆସନ୍ତି ଏଥି, କେତେ ଅତିଥି
ଅନ୍ତରେ ବୋହି କେତେ ଯେ ବ୍ୟଥା ।
ଭୁଲିଯାଏ ସବୁ ଦୁଃଖ, ଭୁଲିଯାଏ ସବୁ ପାପ
ପାଏ ମୋକ୍ଷ କହି ନୁହଇ କଥାରେ ସେ କଥା ।
ଅସଙ୍କେ ହଜାର ହାପିଛି ଦର୍ଘ
ଏହି ତୀର୍ଥେ ରହିଛନ୍ତି ନାଃଗତି
କେଉଁ ଯୁଗର ସେ କେଉଁ ପୀର
ଧନ୍ୟ ତାର ମାତା, ଧନ୍ୟ ସେ ଧର୍ମବୀର ।
ମହାତୀର୍ଥ ଅଛି କାଇପଦର ।



— ୮ —

ଖାଲି କି ବସି ବସି ମୋ ଜୀବନ ଯିବ
ମରଣ କାଳ ଆସିଲା ବୋଲି ଆଖି ଭିଜିବ
ମଧୁର ରାତିର ମଧୁ ସପନ
ସବୁ କି ହୋଇବ ଏବେ ସପନ
ଆଉ କି ଖାଲି ଦୂରୁ ଡାକିକି ମୋତେ ଦାରୁଥିବ ଦିନମାନ
ବସିଥିବ ମୁହିଁ ଅନର୍ଦ୍ଦେଶେ ଚାହିଁ
କାହାପାଇଁ କିଏ ଆସିବ ଭାଇ
ନାଉଡ଼ିର ମୋର ଦେଖା ତ ନାହିଁ
ଡଙ୍ଗା ବାହି ଯିବ କିପରି ଭୀଷଣ ନଈ ?
ଖାଲି ପ୍ରିୟ ସଖା
ଦେଲେ ମୋତେ ଦେଖା
ସବୁ କଥା ଯିବ ଭୁଲି
ଦୈନ୍ୟ ମନ ମୋର ଚାଲିଯିବ ଶୂନ୍ୟେ ଉଡ଼ି ।
କିଛି ଭାବନା ରହିବ ନାହିଁ
ଜୀବନ ରାତି ମୋର ପାହିବ ନାହିଁ
ଆଜି ପ୍ରିୟ ସଖା
ଦେଲେ ଦେଖା ଏହି କଥା କହିବି ଯାଇ ।
ଭାଇ କୋଳରେ ତୁମ୍ଭର
ଥାଇବାକୁ ମୁଣ୍ଡ ମୋର
ଦିଅ ଦିଅ ଦିଅ ସ୍ଥାନ
ମୁଁ ପରା ଏକାନ୍ତ ବିଜନ ବିପିନ
ବୁଲିଲିଣି ଆଜିକୁ ଅନେକ ଦିନ
ଏଥର ଦିଅ ଦିଅ ହୃଦେ ତବ ସ୍ଥାନ ।

ମୁଣ୍ଡଟି ମୋହର କୋଳରେ ତୋହର ଅଳକ ଦେଇ
ହୃଦୟରେ ଉଡ଼ିଯିବ ଅନନ୍ଦ ମନ ।
ଜଗତର ଇଚ୍ଛା, ଜଗତର ଖେଳା
ମଧ୍ୟରେ ଏତିକି ସାର
ଯେ ଯାହାକୁ ଦେଖି ସରସେ
ସେ ତାହାକୁ ଇଚ୍ଛେ ସଦା ପରଶେ
ମନର କୁଞ୍ଜ କୁଟୀରେ
ସଦା ସେ ତାହାକୁ ଗୃହେଁ ରେ
ତାହାର ସାଙ୍ଗରେ ସେ ଜଗତ ଭୁଲିବ
ଜଗତ ଭୁଲିବ
ନାହିଁ କିଛି ଅନ୍ୟ ଭାବନା
ତାହାର ପାଇଁ ଏକା ଜୀବନ ନନର
ପଠାଣି ଦେବ ନ କର ଭାବନା ।

ସେହି ପରି ମୋର ସରଗ ସୁଖ
ତାହାର ବଦନ ଏ ଦେଖିଲେ ହୁଅଇ ଦୁଃଖ
~~ଜ୍ଞାନୀଙ୍କ~~ ଏହି ଏକ କଥା
ଏହାଥିରେ ଏକା ଜଗତଯାକ ଶୂନ୍ୟ
ଆସ ଆସ ତେବେ ମୋର ପ୍ରିୟ କୋକିଳ
ଅନ୍ତର ମୋହର ହୋଇଛି ଶୂନ୍ୟ
କର ତହିଁ ଭ୍ରମର ମଧୁର କୂଜନ
ଉଠାଅ ଉଠାଅ ତହିଁ ସଙ୍ଗୀତ ତାନ
ଶରଦା ପରଦା ଖୋଲି ଯାଉ ଉତ୍ତରକୁ ଉତ୍ତରକୁ ମନ
ତହିଁ ଦିନା ଅଛି ଚିର ବୃନ୍ଦାବନ

ତହିଁ ଅଛି ସିନା ଶର ରାସ ମୋହନ
ତହିଁ ଖେଳିବା ଦୋଳ ଭୁମୁର ମୋହର
ପ୍ରେମେ ପ୍ରେମେ ଫଗୁ ନେଉଥିବା ବୋଳ
ଧୀରେ ଧୀରେ ଝୁଲୁଥିବା ଦୋଳରେ ବସି
ମୟୂରର କେକା ଦୂରୁ ଶୁଣୁଥିବା ରସି
କୋକିଳର କୁହୁ ଶୁଣୁଥିବା ମଧୁରେ
କୁହୁ କୁହୁ କରୁଥିବା ଅନ୍ତରେ ପରସ୍ପରେ
ମଧୁରେଖା ପଡୁଥିବ ଝରି

ପ୍ରେମେ ପ୍ରେମେ ଯାଉଥିବା ଅମ୍ଭେ ଭରି
ଲସହ୍ନ ଦିନା ଏକା ରାସ ବୃନ୍ଦାବନ
ତହିଁ ରଖିବା ଭରି ତୋହର ମୋହର ମନ
ତୁମେ ଗାଉଥିବ କୁହୁ କୁହୁ କୁହୁ
ମୁଁ କହୁଥିବ ସେତକ ସେତକ ଥାଉ
ହସି ଦେଉଥିବ ମଧୁରେ
ଚୁମ୍ବନ ଦେଉଥିବ ସଧୀରେ
ମଳୟ ଆସୁଥିବ ବହି
ମିଳନ ମଧୁରେ ଯିବ ରହି
ପୁଲକ ସଞ୍ଚାର ଦେଉଥିବ ତେବେ
ଯାମିନୀ-ପୁଲକେ ହସୁଥିବ ଯେବେ
ରାସ ବୃନ୍ଦାବନେ ବସି ଦେଉଥିବା ଦୋଳ
ଫଗୁ ମୁଠା ପରସ୍ପରେ ଦେଉଥିବା ବୋଳ
ଭାଳ ଅନେକ ଦିନ ବିରହ ପରେ
ମିଳନର ଏହି ଆବେଗ ପ୍ରାଣରେ ଭରେ

ଯିବ ଯେବେ ପରଶ ଭରି ଧରିବାକୁ
ତୁମ୍ଭକୁ ଦୂର ଦାଣ୍ଡେ
ମେଲାଇ ଦେବ ଭାଇ ଦୁଇ ହାତ ତୁମର
ରହିଯିବା ପରସ୍ପରେ ବୁକେ ବୁକେ
ଚାହିଁ ଥିବା ପରସ୍ପରେ ମୁଖେ ମୁଖେ
ଚାହିଁ ଥିବା ପରସ୍ପରେ ଚକ୍ଷେ ଚକ୍ଷେ
ମିଳନର ସେହି ଆଶା ଏବେ ଜାଗଇ ଧୀରେ,
ଭାବନାରେ ରହେ ମୁହିଁ ଅଧୀରେ
ମିଳିବି ମିଳିବ ମିଳିବ ତୁମ୍ଭ ସାଥେ
ଦିନରାତି ରହିବା ସାଥେ ସାଥେ
ରଜନୀ ଯେବେ ଆସିବ
ମୁଦିବା ଆଖି ପ୍ରେମରେ ଭରିବ
ସଖା! ମନ ପିଞ୍ଜରେ ଦିଅ ଦେଖା
ବସିବା ତହିଁ ଦୁଇ ସଖା ଏକ ଡାଳେ
ରହିବା ତହିଁ ମନ ଭୋଳେ
ରାତି ଯାକ ବସି ଭାବିବା କେତେ କଥା ମନେ
ରାତି ଯିବ ପାହି, ଦିବସ ଆସିବ ଧାଇଁ,
ଦିନରେ ଭାଇ କାମ କରିବା ଯାଇଁ
ଦିପହରେ ବସିବା ପୁଣି ଏକତ୍ର ହୋଇ
ଅଦ୍ଭୁତ କଷ୍ଟ ନାହିଁ ସଂସାରେ
ଏତିକି ବିନା ପରମ ଧନ ତୁ ମୋର ଭାଇ ରେ
ଆ ଆ ଦିନୁଁ ଦିନୁଁ ଅନ୍ତର ଅନ୍ତର ମୋ ବଢିଛି
ଚରଣେ ପରାଣେ ଏକ ହୋଇ ଯାଉଁ
ରହିଯା ତୁ ମୋ ସ୍ମୃତିରେ

ଲଭେ ତହିଁ ମୁହିଁ ମୋକ୍ଷ ପରମ ଗତିକି
ଆ ଆ ମୋର ବାଇଆଣ୍ଟା।
ନେ ନେ ମୋର ଏହି ପର୍ଣ ଗୋଣ୍ଟା।



—୯—

ଯୁଇ ଜାଈ ଥାଉ ଅଛୁ ଯାହାର
ଗିରମଲ୍ଲୀରେ ମନ ପୂରୁ ମୋହର
ଯାହାର ଯେତିକ, ତାହାର ସେତିକ,
ମୁଦ ଲଭେଁ ମୁହିଁ ବାର ବାର

ଫୁଲକୁ ଥାଏ ଶରୀର, ଗୃଲୁଥିଲେ ସେ ଧୀର ଧୀର,
ଖରାରେ ବୁଲୁଥାଉଁ ଯେବେ ଅମ୍ଭେ ଦୁଇ ଶରୀର

ଝୋପି ଝୋପି ଝାଲ ତାର ଚୂର୍ଣ୍ଣ କେଶେ
ଦିଶୁଥାଏ ସତେ ଟିକ୍କ ଟିକ୍କ ମୋତି କି ସେ

ମୁଁ ତାର ଭ୍ରୂ କରୁଛି କେତେ ଥର ଚୁମ୍ବନ
ସେ ଯେ ମୋର ବଡ଼ ବଡ଼ ପ୍ରାଣବିମୋହନ
ଶୋଭିସ୍ତୋମ ସେ ମୋହର, ନାହିଁ ଇଚ୍ଛା ଅଉ କିଛି

ତଳଣୁ ଚକୁର ଯାଏଁ ଚୁମ୍ବିଛି ତଉ ଭର ବାର ବାର
ନୟନଶ୍ରବା ନୋହି ନୟନେ ଶୁଣିଛି ତା ବାଣୀ
ମରମେ ପଶି ପଶି ତାହା ଦେଇଛି ବିଶେଷ ହାଣି

ପଠ ପଠଲ ପର ଦେଖିଛି ଅନେକ ସଖୀ

କେହି ଅଉ ଏପର ଯାଇ ନାହାନ୍ତି ଲଖି
ଶିରୋଗର୍ଭିକରୁ ଶୋଣ କଞ୍ଜ ଚରଣ ତାର ଚୁମ୍ବିଛି କେତେ
ମନ ପ୍ରାଣ ଦେଇ ତା ଚିଲ୍ଲୀ ଉଠାଇ ନଦରୁ ଜଗାଇଛି ଯେତେ

ସେ ଯେ ମୋର ମରମରେ ପଶି ଯାଇଛି ମୁଁ ଯେ ତାର ମରମରେ
ଯେ ଯେତେ ଯତ୍ନ କଲେ ବଢିବ ସିନା ସେ ତୃଷା ବାଢ଼ି ବାଢ଼ି
ମୋର ମରତ ପୁର ଆଜି ହୋଇ ସରଗ ପୁର
ମୋର ସପନ ହୋଇଛି ସତ, ଭରିଛି ପ୍ରେମେ ଅନ୍ତର।



— ୧୦ —

ଦେଖିଲି ଦୂରୁ ଚରଣେ ଢୁଳାଇ କେ ତରୁଣୀ
ଚାହିଁଲି ଲଭିବାକୁ ଆପଣାର ମରମ ବାଣୀ
ଢାଙ୍କିଛି ତାହାର ଚରଣ ଯୁଗଳ ଘାଗର ନାହିଁ ଅନ୍ତର
ଦେବ ବିକର୍ତ୍ତନ ରହି ରହି ଦେଉଛନ୍ତି କିରଣ ଭର
ଲାକ୍ଷା ତାହାର ଚରଣୁ ଦ୍ରବି ନାହିଁ ଧୂଳି କରି ରଞ୍ଜିତ
ଦେଖିଛି ମାତ୍ର ମୁଁ ତାହାର ଚରଣ ତଳ ସୁଲଳିତ
ଜନମ୍ ତାହାର ଦେଖିଛି ଚଞ୍ଚଳ ଚରଣପଥେ
ଧ୍ୱନିତ ଝଙ୍କାର ନୂପୁର ନାହିଁ ପାଦ ସଙ୍ଗତେ
ଦେଖି ନାହିଁ ତାହାର ଅକୃତ୍ରିମ କ୍ଲାନ୍ତ ଆନନ
ଶ୍ରମେ ତାହାର ଆନନୁଁ ମୌକ୍ତିକ ହୋଇଥିବ ସ୍ରବଣ
କବରୀ ତାହାର ଦେଖିଛି ମିଛ ନାହିଁ କହିବାର
ପଡ଼ିଛି ଯେବେ ଓଢ଼ଣା ଖସି ମସ୍ତକୁ ତାହାର
ସେ ଚାଲିଛି କାହିଁ ପାଇଁ କହିବ କି ଭାଇ
ଶୁଣିଛି ଶୁଣିଛି ସେ ମୁରୁଛି ଦେଇଛି ଜୀବନ ପରର ପାଇଁ।



—୧୧—

କହିବ କାହାରେ କହିବ କାହାରେ
ରକ୍ତ ମୋହର ଶୋଷି ଖାଉଛନ୍ତି ରେ
ମୁଁ ଦୁଃଖୀ କୃଷୀ ଖାଆନ୍ତି ରକ୍ତ ଶୋଷି
କେହି ମୋ କଥା ଏଠେ ଭାବନ୍ତି ନାହିଁ ବସି

ମୋର୍ ରକ୍ତ ଶୋଷି ଶୋଷି ମୋତେ କରିଲେଣି ଦୁର୍ବଳ
ହୀନଶିର, ନାହିଁ ନାହିଁ କିଛି ଆଉ ମୋର୍ ସବଳ
ମୁଁ ହେଲିଣି ମଡ଼ା, ଗ୍ରାମ ହେଲାଣି ଶ୍ମଶାନ ପରି
ଆଜି ଅସି ବାଉଳି ମୋତେ

ନେଉଛନ୍ତି ମୋର ସବୁ, କରୁଛନ୍ତି ଅପହୃତେ
ଆଜି ନୟନେ ନାହିଁ ବିଳାସ
ଆଜି ଅଧରେ ନାହିଁ ହାସ
ଆଜି ଶୟନେ ଲହିବ ଉଶ୍ୱାସ
ଏ କଥା ମୁଁ କହୁଛି ବସି
ଗଲାଣି ମୋ ମୁଣ୍ଡ ବିରସି
ମୁଁ ହୋଇବି ପାଗଳ
ଏବେ ହଅ ମୋର ସକଳ
ମୁଁ ଖାଲି ପାଗଳ ପରି ଲଙ୍ଗଳା ହୋଇ
ବୁଲିବି ଦେଶ ଦେଶ କେହି ପଚାରିବେ ନାହିଁ ।

—୦✽୦—

—୧୨—

ଶୁଣୁ ଶୁଣୁ ମୋହନୀ
ମନ୍ଦର ବାହନୀ
ଅଳଙ୍କାର ଶୋଭନୀ ଯୌବନ—ତରଙ୍ଗିଣୀ
କୂଳ ଦୁକୂଳ ଧାରଣୀ ମାନସ—ଲୋଭନୀ
ରହିଛ ଉଭା ହୋଇ ଶୁଣୁ-ଶୁଣୁ ସ୍ପନ୍ଦାଣୀ
କେହି ନ ଛୁଇଁବେ ତୋର ଅଙ୍ଗ ମୋ ଭଗିନୀ
ଯାହାର ପାଇଁ ବ୍ୟଥା ଦେଇଛନ୍ତି ତୋତେ ରମଣୀ
ରମଣୀ ସେହି ଗରବେ କେଳି ଗୃହେ ହୁଅ ତୁମ୍ଭେ ସୁଭାଗିନୀ
ଦେଖି କେବଳ ଥରେ ଥରେ ସରସ ଚିତ୍ତ ହେ ଚିତ୍ତମୋହନ
ରମ୍ଭୋରୁ ସମ ରହ ଅଦୃଶ୍ୟ ମାନବଚିତ୍ତ ହାରିଣୀ ।



—୧୩—

ପାଦର ଧୂଳି ଅଣ ରେ ବୋହି
ଅଛି ଯେ ଯହିଁ
ଲଭିବି ମୁଁ ପରମ ଶାନ୍ତି
ସେ ଧୂଳି ଟିରେ ବୋହି ।
ବାହୁଡ଼ନ୍ତି ଗୋଧନେ ଶତ ଶତକରେ
ତାଙ୍କର ଗୋଧୂଳି କରଇ ପବିତ୍ର ମୋ ଦେହରେ
ଗୋଧୂଳିରେ ହୋଇ ରଞ୍ଜିତ ରହିଛି ମୁଁ ଉଭା ଗାଉଛି ସଙ୍ଗୀତ
ଝାଡ଼ଇ ଧୂଳି କଏ ସେ ନାରୀ
ଶୀର୍ଣ୍ଣା ଘର କରଇ ପରିଷ୍କାର ଅନ୍ତର

ତାହାର ସଙ୍ଗତେ ମୁଁ ରହିଛି ତଳେ
ମୋର ଚିତ୍ର କରିବାକୁ ପୂର୍ଣ୍ଣ ବିମଳ ଅଙ୍ଗେ
ଜନ୍ମିଥିଲେ ଯୀଶୁ ହରମେ ଯେବ ଜଗତ ବେଦନା
ଯାଉଛନ୍ତି ଶୂଳ କ୍ରୁଶେ ଚଢ଼ି ଆସୁଛନ୍ତି ନାଉ ଦେବାକୁ ଅଶ୍ୱାସନା



—୧୪—

ଦୀପ୍ତ ଥିଲା ଯେତେବେଳେ ସୂର୍ଯ୍ୟର ମୟୂଖ ମାଳା
ଉଷାର କପୋଳ ତଳ ରଞ୍ଜିତ ହୋଇଥିଲା କେଉଁ କାଳ
ସେ କଳିଙ୍ଗ ଖାରବେଳ ଯୁଗର କଥା ମନେ ପଡ଼ୁଛି ଯେବେ
ଆଜ ଦ୍ୱିପ୍ରହରେ ପକ୍ଷୀର ବିଜନ କାକଳୀ ରହି ରହି
ଭୁବନେଶ୍ୱରର ଲତା ଗୁଳ୍ମେ ଯେବେ ଗୀତ୍କାରେ ଦହି ଦହି
ସେ ସ୍ନିଗ୍ଧ ନୀରବତା ମଧ୍ୟରେ ପାଏଁ ସେ ଯୁଗର ଚିର ସନ୍ଧାନ
ଐତିହାସିକ ମାନଙ୍କେ ଅନୁଭବ ଆସେ ସେ ଯୁଗର ବଖାଣ
ଶ୍ୟାମାୟିମାନ ତରୁ ଶ୍ରେଣୀ ଭଗ୍ନ ଶୀର୍ଷୋତ୍ତୋଳନ କରି ମନ୍ଦିର
ଉତ୍କଳ ଅଙ୍ଗନ ପ୍ରକୃତ ଗାମ୍ଭୀର୍ଯ୍ୟେ ମିଶି ମାନବ ତ ...
ରହିଛି ରହିଛି ତହିଁ ଯେପ୍ରେ କଳିଙ୍ଗ ଉତ୍କଳ ଓଡ୍ର
ଗୋପନ ଲୀଳା ସେହି
ଏହି ମହାତୀର୍ଥର ରୂପାୟିତ ଗୋପନ ଲୀଳା ଭାବୁକେ
ହଅଇ ଧନ୍ୟ
କହେ ଯେପ୍ରେ ସେ ରହି ରହି ଶାନ୍ତ ହୁଅ ଧୀରେ କଥା କୁହ
ଅରେ ମନ ନତ କର ନତ କର ଭକ୍ତିରେ ଆପଣା ଶିର
ନାହିଁ ଏଠି ଧୂମାକୀର୍ଣ୍ଣ ଧୂଳି ଧୂସରିତ ପାପ କୋଳାହଳ ।

ଅଛି ଏଥି ନିସ୍ତବଧ ତପୋବନଛାୟା ଶାନ୍ତ ନିକେତନ
ଅଚିନ୍ତା କୁଟିରେ ପଶି ବ୍ରହ୍ମଚର୍ଯ୍ୟ କର ଅଶ୍ରପ୍ତ

ଲଭିବ ଜୀବନର ଚରମ ଶାନ୍ତି କାନ୍ତି ପ୍ରୀତି ଅତୃପ୍ତ
ଭୁଲିବାର ଗୃରୁ ଚିତ୍ରଶାଳା ନାହିଁ ଏଥି
ଏଥି ଅଛି ସ୍ତୁପତିର ମୂର୍ତ୍ତ ଧୈର୍ଯ୍ୟ ପୂର୍ଣ ନିର୍ବାଣ ବିର୍ବାଣ
ଭୁବନେଶ୍ୱର ଭୁବନେଶ୍ୱର ରାଜୁଛି ସୁନ୍ଦର
କଣ୍ଠ ପୂର୍ଣ୍ଣ ଶୀର୍ଷ କରି ଅକାଶ ଉଦ୍‌ଭିନ୍ନ
ସେ ଶିଳ୍ପ କଳା ସେ ଶିଳ୍ପ ପଦ୍ଧତି ଉତ୍କଳୀୟର ସ୍ୱତନ୍ତ୍ର
ଆସ ଦେଖି ଯାଅ ଚକ୍ଷୁ କରି ସାର୍ଥକ ମନ କରି ତୃପ୍ତ
ଦେଖି ସେ ସୃଷ୍ଟି ନିର୍ମାଣ କୌଶଳ ଜଗତ କରୁଛି ଧନ୍ୟ
କବି ଆଜି ସ୍ୱପ୍ନ ବିଜଡିତ ଚକ୍ଷୁରେ ଦେଖୁଛି କି ଏହା
ସ୍ୱପ୍ନ ନୁହେଁ ଏବେବି ସତ୍ୟ ଏବେବି ବାସ୍ତବ ଦେଖ ଏହା
ସତ୍ୟ କହୁଛି କବି ଚଳଚ୍ଛିତ୍ତଂ ଚଳଦ୍ୱିତ୍ତଂ ଜୀବନଯୌବନଂ
ସତ୍ୟରେ ସତ୍ୟ ଚଳାଚଳ ମିଦଂ ସର୍ବଂ କୀର୍ତ୍ତି ଯସ୍ୟ ସ ଜୀବତି
ରହୁଛି ରହୁଛି ଜୀବିତ ହୋଇ ରହୁଛି ଏବେବି ସେହି ଓଡିଆ ଜାତି
ହର୍ଷବିହ୍ୱଳ ଅନନ ଆଜି ନାହିଁ ଉତ୍କଳେ ସତରେ ସତ
ପ୍ରକୃତିର ଦୟା, ମାନବର କୃତି, ଅପୂର୍ବ ସୁନ୍ଦର କରି ଲେଖୁଛି
ଏବେ ବି ଉତ୍କଳ ବକ୍ଷ ।
ଶାରଦ ରଜନୀର ସ୍ନିଗ୍ଧ ସୁଧାକର ଏ ଜାତିର ଜୀବନେ
ଫେରିବ କେବେ
ଅପେକ୍ଷି ତାହାକୁ କାଟଇ ସେ ହେମନ୍ତ ଶୀତର ମର୍ମନ୍ତୁଦ
ଦୁଃଖ ଏବେ
ହୁଏ ତ ଆସିବ ସହସା ବସନ୍ତର ନବ କିଶଳୟ
ଓଡ଼ିଆ ଜାତି କରିବ ଧନ୍ୟ

ପୁଣ୍ୟ ଭୂମି ପୁଣ୍ୟ କାନନ ପୁଣ୍ୟ ଶିଳା ଶୈଳ ଉତ୍କଳର
ଉଠିବ ମନ୍ଦ୍ରିତ ହୋଇ କଲ୍ଲୋଳବ ପୁଣି ମହା ମାନବର
ସାଗରଗର୍ଭର
ବ୍ରହ୍ମଚର୍ଯ୍ୟ ଉଦ୍‌ଭବ ଜାତ ଉତ୍କଳ–ଗୌରବଛଟା ବଢ଼ିବ ତହିଁ
ଧନ୍ୟ ହେବ ଉତ୍କଳର ନର ନାରୀ ସର୍ବେ ଉତ୍କଳେ ରହି
ଖେଦକ୍ଷୁଣ୍ଣ ବେଦନା ପାଶ୍ରି ଉତ୍କଳଜନନ ଲଭିରାଜ ଧନ୍ୟ କହି ।

—୦୫୦—

—୧୫—

ଅଜ୍ଞ ମୁହିଁ ଛନ୍ଦ ନାହିଁ
ବାଟ ଚାଲେ ଛନ୍ଦେ
ଧୀରେ ଧୀରେ ଦିନ ବାହି
ଚାଲେ ମୁଁ ନିର୍ଦ୍ଦନ୍ଦ୍ୱେ ।
ଦିନ ଶେଷ ବେଳ ଶେଷ
କାହା ମୁଖ ଚାହିଁ
ଧୀରେ ଧୀରେ ମୁଁ ସଧୀରେ
ଦିନ ନେଲି ବାହି ।
ସ୍ନେହ ମୋର ଅଛି ଅଛି
ସ୍ନେହ ମୁଁ ପାଇଛି
ଭିକ ମାଗି ମାଗି ମୁହିଁ
ଦିନ ଯେ ନେଇଛି ।
କେତେ ଘରେ କେତେ ଲୋକ
କରିଛି ଆଦର

ଉକ୍ତ ମୁଠେ ଭିକ୍ଷୁ ବାକ୍ୟ

ପାଇଛି ଦେହ ଜୂର ।

ଘଡ଼ି କଣ୍ଠା ବୁଲି ପଡେ

ନତ ନତ୍ତ ନତ

ମୁହିଁ ବୁଲେ ଖର ବର୍ଷା

ଘର ଘର ପ୍ରୀତ ।

ବାଠ ଘାଟେ ଚନ୍ଦ୍ର ରଶ୍ମି

ଠଉର ଠଉର

ସ୍ନେହେ ଗୃଲେଁ ମୁହିଁ ଧୀରେ

ଗୁଣି ଦ୍ୱର ଦ୍ୱର ।

ଧନ୍ୟ ମୁହିଁ ଅବ୍ଧ ନୋନ

କେବେ ସ୍ନେହ ପାଇ

ଦ୍ୱନ ନେଲି ସ୍ନେହେ ବାହି

ଦୂଃଖ କଷ୍ଟ ନାହିଁ ।



— ୧୭ —

ଧର୍ମ ପଦ ଯେ ଅମୂଲ୍ୟ

ଗ୍ରନ୍ଥ ଶୁଣ ତାହା

ଶ୍ରାବସ୍ତୀ ନଗରେ ବୁଦ୍ଧ

ଥିଲେ ଯେ ଏକଦା ।

ପାନ୍ନେସା ନାମରେ ଭିକ୍ଷୁ

ଅତି ମୂର୍ଖ ସେ ଯେ
ଗାଥା ଗୋଟିଏ କଣ୍ଠସ୍ଥ
କରି ନ ପାରେ ସେ ।
ଭିକ୍ଷୁ ଭିକ୍ଷୁଣୀ ସେତେକ
କରନ୍ତି ବିଦ୍ରୂପ
ଧନେ ବୁଦ୍ଧ ଦୟା ବହି
ଡାକିଲେ ଅନୂପ ।
ବୋଇଲେ ମୁଖ ନ ଖୋଲି
ରହିବେ ଯେଉଁ ଜନ
ସେ ଯତି ନ କରେ ଜାଣ
କାର ଅକାରଣ ।

ଶୁଣି ଏ ବଚନ ଭିକ୍ଷୁ
ଖୋଲିଲା ହୃଦୟ
ଶିଖି ଗଲା ଗାଥା ଗୋଟି
ଆଶ୍ଚର୍ଯ୍ୟ ବିଷୟ ।
ବୁଦ୍ଧ କହିଲେ ଅବାର
ଶୁଣ ଆହେ ଭିକ୍ଷ
ବିଦ୍ରୂପ କରିବେ ସର୍ବେ
ଯେ ପୁଣି ତୁମ୍ଭଙ୍କୁ—
କହିବେ ବୁଦ୍ଧ ଶିକ୍ଷିଛି
ଏକଇ ଗାଥାଟି
ମୁଣ୍ଡେ ନ ପଶେ ତାହାର
ଅପର କଥାଟି ।
ବୁଝିଣ ଗାଥାର ଅର୍ଥ

ଲଭିଲା ସେ ମୋକ୍ଷ
ହୋଇଲା ସେ ଅରହନ୍ତ
ଶାନ୍ତ ତାର ବକ୍ଷ ।
ଥିଲେ ତଥି ଛଅ ଶହ
ଭିକ୍ଷୁଣୀ ଅବର
ଲୋଡ଼ିଲେ ଉପଦେଶ ସେ
ବୁଦ୍ଧ ନିକଟର ।
ପାନ୍ତ୍ରେସାଙ୍କୁ ଜ୍ଞାନୀ ବୁଦ୍ଧ
ପଠାଇଲେ ସାର
ଜାଣନ୍ତି ଯେଣୁ ସେ ବିଜ୍ଞ
ଜୀବନ ବ୍ୟାପାର ।
ଭିକ୍ଷୁଣୀ ହସିଲେ ଯେତେ
କରିଲେ ବିଦ୍ରୂପ
ପାନ୍ତ୍ରେସା ଗାଥା ଗୋଟାଇ
କରବେ ଯେ ରୂପ ।
ପାନ୍ତ୍ରେସା ଯାଇଣ ବୋଲେ
ଶୁଣ ହେ ଭିକ୍ଷୁଣୀ
ମୂର୍ଖ ମୁହିଁ ଅଛ ଜାଣେ
ଗାଥା ଗୋଟି ପୁଣି
ଶୁଣ ତାହା ମନ ଦେଇ
ବୋଲ ପୁଣି ତାହା ।
ନ ଅଟେ ମନରେ ଅଉ
ଲଜ୍ଜା ପାଇଣ ସେ
ନମି ପାନ୍ତ୍ରେସା ପଦ୍ମରେ
ଲଭିଲେ ଦୀକ୍ଷା ଯେ ।



—୧୬—

ବିପୁଳ ପୁଲକ ବନ୍ୟା
ଆଣିଦେଲ କିଏ ହେ ତୁମ୍ଭେ କନ୍ୟା
ପରଶେ ଯାହାର ସରସେ ପ୍ରାଣ
ଗନ୍ଧ ଛୁଟେ, ମଧୁପ ଲୁଟେ, ଲୁଟେ ମଳୟ, ଚହ୍ଲ ରହ୍ଲ ଅହରହ,
ଅଷାଢର ପ୍ରଥମ ବଉଦ ଦେଖା ଦେଇଥିଲା ଯେବେ
ସୂଚି ଥିଲା ପରା ଶ୍ରାବଣର ବିପୁଳ ବନ୍ୟା
କିଏ ସେ ମୋର ମାନସ ମୋହିନୀ କନ୍ୟା
ପରଶେ ଯାହାର ଉଚ୍ଛୁଳ ଉଠେ ସକଳେ ହୁଅନ୍ତି ଧନ୍ୟା
ଜୀବନ ଯାହାର ସରସ କରିବା ଇଚ୍ଛା ହେ
ଯାହିଁ ଅସ ଶୋଷିବାକୁ ଅମର ବାଞ୍ଛିତ ଏ ପୀୟୂଷ ହେ
ଗୀତେ, ବାଦ୍ୟେ, ନୃତ୍ୟେ କିଏ ସେ କରୁଛି ଧରଣୀ ଧନ୍ୟା
ଆହେ ଛନ୍ଦେ, ମନ୍ଦେ, ମଧୁରେ, ପୁଲକ ମହକ ଧରଣୀ କରି ଧନ୍ୟା
ସେ ସୁନ୍ଦର ଦରଶନେ, ସେ ସୁନ୍ଦର ଚରଣେ, ଗୋଟିଏ ନମସ୍କାର
ଗୋଟି ଗୋଟି କରି କରୁଛି ଏବେ କୋଟିଏ ନମସ୍କାର
ଧନ୍ୟ ଧନ୍ୟ ଧନ୍ୟ ଆଜ ଗୋ ଧରଣୀରେ ବହୁଛି ବନ୍ୟା
ଆସିଛି ପୁଲକ, ଆସିଛି ସୁନ୍ଦର ମହାସୁନ୍ଦରୀ କନ୍ୟା ।



—୧୭—

କାଲି ଗୋଷ୍ଠ ପ୍ରାଙ୍ଗଣରେ ବାନ୍ଧବ ମେଳରେ
ଯାହା ହୋଇଥିଲା ମନେ ରହିବ ତାହା
ମୋର କାଲକାଲ ସିନାରେ ଭାବ ।୧।

ପ୍ରାଣେ ପ୍ରାଣେ ମିଳିଥିଲେ ସେ କେଡ଼େ ପ୍ରେମରେ
କହୁ ନ ହେବ ତାହା ଏ କଥାରେ ସହୁ
ମୋର ମରମେ ଛୁଇଁଲାରେ ଭାବ ।୨।
ମୋହର ଜୀବନ ତୁହୁ ମୋହର ଜୀବନ
ମୁହିଁ ରଖିବି ଜୀବନ ତୋହରି ପାଇଁ
ମୋର ପରାଣ ମୋହିଲାରେ ଭାବ ।୩।
ବିରହରେ ରହିବ ମୁଁ ମିଳନ ପାଇଁରେ
ମିଳନେ ଲୁଚିବ ମୁହିଁ ତବ ଆନନେ
ତୋ ସଙ୍ଗ ମାଗିବା ପାଇଁରେ ଭାବ ।୪।
ପ୍ରେମର ଦାନ ପ୍ରେମ ବିନା ନ ଯିବ ତୁଲି ରେ
ଜଣାଇବନ୍ତି ସବୁ ପ୍ରେମ ଜଣାଇବ
ଧଇରେ ମୁହିଁ ପରି ନୁଅଁରେ ଭାବ ।୫।



—୧୮—

ଚନ୍ଦ୍ରିମାହର ସୁନ୍ଦର ହେ ହର ସୁନ୍ଦର
ତୋର ଚରଣେ ଶିର ନୁଅଁ ଏ ।
ସେବକ ଜନର ସେବା ସେବା ପର
ପ୍ରେମୀ ଜନର ପ୍ରେମ ପ୍ରେମ ପର
ଦୁଃଖୀ ଜନର ବେଦନ ବେଦନ
ସୁଖିର ଆନନ୍ଦ ହେ ।
ବନ ବନରେ ଶ୍ୟାମଳ ଶ୍ୟାମଳ
ସରିତେ ସରିତେ ଚଞ୍ଚଳ ଚଞ୍ଚଳ

ଗିରି ଗିରିବରେ ଉନ୍ନତ ଉନ୍ନତ
ସାଗରେ ଗମ୍ଭୀର ହେ ।
ଜନମେ ଜନମେ ଜୀବନ ଜୀବନ
ମରଣେ ମରଣେ କେଡ଼େ ପରସନ୍ନ
ଚନ୍ଦ୍ର ସୂର୍ଯ୍ୟ ଭାତେ ନିରମଳ ଧାମ
ଉଜ୍ଜ୍ୱଳ ଜଗମନ୍ଦିର ହେ ।



—୧୯—

ଭୁବନେଶ୍ୱର ଅଞ୍ଚଳ ଖେଳ ମୋର
ହୃଦୟ ମନ୍ଦିର ଆଜ ଦେଇଛି ଖୋଲି;
ପ୍ରେମ ଶତଦଳ ଫୁଟିଛି ସୁନ୍ଦର ପରଶ ତୋହର
ଲଭିଣ ଭୂରି ।
ହୃଦୟ ଅଦ୍ଭୁତ କାନନରେ ପାଷାଣ ମୂରତିରେ
ନବଣୀ ଗଳେ
ଅମୃତର ଝର ଅଛି ଫୁଟିଛି କା ଅଘାତ ବାଜି
ଧନ୍ୟ ମୁଁ ସେ ପରଶ ଲଭିଲି ।
ଆସ ବଲରାମ ଶ୍ରୀକର ଧରିଣ ଦେଖିବା ଅଭିରାମ
ସେ ଛବି ରୂପେ ରୂପେ
ଯଶୋଦାଗୀତ ଗାଇ ନାଚିବା ଉଲ୍ଲାସେ କରେ କର ଧରି
ମୋହନ ମଦନ ରୂପେ ।
କଲ୍ଲୋଳିନୀ ଅଛି ଧାଉଁଛି ଗରଜି
ଯାହାର ଚରଣ ଲଭିବା ପାଇଁ
ତାଙ୍କର ପାଶରେ ରହିଣ ସାନନ୍ଦେ ଫୁଲିବା
ପ୍ରେମେ ବିହ୍ୱଳ ।



—୨୦—

ଅଲୋକ ସାଗରେ ସ୍ନାହାନ କରଣ
ଫୁଲ୍ଲ ନୟନେ ନିରେଖି ରୂପ ଭାର ।
ହୋଇଲା ଅଜ ମୁଁ କ ବଭୋର   ମହା ମହିମା ଏ ତାହାର
ଅଳି ବୁଲୁଥାଏ ପଦ୍ମରେ ପଦ୍ମରେ ଗୁଞ୍ଜରି ଗୁଞ୍ଜରି ।
ସେ ମୋହର ଭବକର୍ଣ୍ଣଧାର   ତାହାର ପଛେ ମନ ମୋହର
ଧରେ ତାଙ୍କୁ ମୋ ପ୍ରାଣ ହରିବା ପାଇଁ ଅମୀପ୍ସ କରି ।
ଦେଇଛନ୍ତି ସେମାନେ ଅମୃତ ରସ ଭରି
ଯେତିକ ଥିଲା ପାଶେ ହେ ଶ୍ରୀହରି
ବନ୍ଧୁମେଳେ ଧାଇଁଣ ଯାଏଁ   ନୃତ୍ୟେ ଗୀତେ ଅଧୀର ଭିଡ଼ ।



—୨୧—

ନମୋ ନମୋ ପରଣ ମୋର ଗୋ । ଏତେ କାଳରେ ।
କୃତଜ୍ଞ ହୋଇ ଭୁମୃର ପଦ୍ମରେ ଶିର ମୋହର ।
ଧ୍ରୁବତାରା ହେ ଅମୃର, ଗମ୍ଭୀର ମନ୍ଦ୍ରେ, କାହାର,
ବାଣୀ ଯେ ଶୁଣିବାର, ମୁକ୍ତରେ ହୃଦ ଅମୃର ।
ବପଦେ ଅମ୍ଭେ ଅଶ୍ରିତ, ଅନ୍ତର ପ୍ରୀତି ଲଭିତ,
କୁଞ୍ଜେ କୁଞ୍ଜେ ଶାଖୀ ପ୍ରଫୁଲ୍ଲତର, ମାନସ
ଥର ଥର ଥର, ମନ୍ଦ ଭୁମୃର ମନ୍ଦ୍ରିତ, ପୁଣ୍ୟ କ
ହେ ଅମୃର, ନିରବଧି ତରସାଥୀ ଯେ ହୋଇଣ
ଉଦ୍ଧର, ଅହେ ଦ୍ଧିନ ଖିଛ ଦାନ ମୁହିଁ ଅତି ।୧।
ଗଜେନ୍ଦ୍ରଗଜ ବଦରେ, ଅନ୍ତର ମୋର କୁହରେ,
ଅଞ୍ଜୁଳେ ବୋଲେ ଉଦରେ, ତାଙ୍କର ଗୁଣ କହରେ ।

ନିତ ନିତ ଭକ୍ତି ଘନ ଘନ ବଢଇ, ଭବେ
ଯେତେ ଦିନରେ ରହି ରହି ହେ ମୁହିଁ, ଶୁଣୁଥିବ
ଖ୍ୟାତି ହେ ସ୍ୱଜନ ଚିତ୍ତ ପରସନ୍ନ ବଢ଼େ ହେ। ହରଷ ମତି ।୨।
ଅଛ ଅସନ୍ତ ସନ୍ତାନ, ବିଦେଶଁ ଭରି ସେ ମନ,
ସୁଖରେ ଚିତ୍ତ ବଢ଼ାଇ, ଏବେ ସେ ରହି, ସ୍ୱଦେଶେ ସୁଖ
ଭୁଞ୍ଜି, ଦେବେ ସେ ଚିତ୍ତ ମୋହି ।
ବେଳ ଏହି ଜାଣି ସ୍ୱଜନ ଅସିଅଛୁ ବନ୍ଧୁ ତବ
ଗହଣେ, ମୁହିଁ ଯିବ ସୁଖରେ ମନ୍ଦ୍ରି, ମନ୍ଦ୍ରି ଯିବ
ମୁହିଁ, ଅନନ୍ଦ ପ୍ରେମେ ରହି ରହି, ଏବେ ମୋର କ ଅନନ୍ଦ ପ୍ରୀତି ।୩।
ସର୍ବ ଭୁବନେ ତୁମ୍ଭେ ତ, ରହିଅଛ ବିରାଜିତ,
ସୁଖ୍ୟାତି ପୁଣ୍ୟ ଅର୍ଜିତ, ମୁଁ ଯେ ବଞ୍ଚିତ । ଚିରସାଥୀ
ମୋହର ତ, ଆଶାରେ ନୋହୁଁ ବଞ୍ଚିତ ।
ନିରବଧି ଅତି, ଆଗମନ ଅଶେ ମତି, ରହିଅଛୁ
ପ୍ରେମେ ପୂରଣ କହିବ କତି, ସଙ୍ଗୀତରେ ମୋର ଏତିକି
ମିନତି, ରଖନ୍ତୁ ପ୍ରୀତି ସନ୍ତାନେ ଏହି ଦମ୍ପତି । ୪ ।



—୨୨—

* ତାଙ୍କୁ ଅରତି କରେ ଚନ୍ଦ୍ର ତପନ, ଦେବ ମାନବ ବନ୍ଦେ ଚରଣ,
ଅସୀନ ସେହି ବିଶ୍ୱ ଶରଣ, ତାଙ୍କ ଜଗତ ମନ୍ଦିରେ ।
ଅନାଦି କାଳ ଅନନ୍ତ ଗଗନ, ସେହି ଅସୀମ ମହିମା ମଗନ,
ତହିଁ ତରଙ୍ଗ ଉଠେ ସଘନ, ଅନନ୍ଦ ନନ୍ଦ ନନ୍ଦରେ ।
ହାତେ ଯେନ ଛ ରିତୁର ଡ଼ାଲି, ପାଦେ ଢାଏ ଧରା ଫୁଲ ଛାନ୍ଦି

କେତେ ସେ ବର୍ଣ୍ଣି, କେତେ ସେ ଗନ୍ଧ, କେତେ ଗୀତ, କେତେ ଛନ୍ଦ,
ବିହଗ ଗୀତ ଗଗନ ଛାଏ   ଜଳଦ ଗାଏ, ଜଳଧି ଗାଏ
ମହା ପବନ ହରଷେ ଧାଏଁ   ଗାଏ ଗିରି କନ୍ଦରେ ।
କେତେ କେତେ ଶତ ଭକତ ପ୍ରାଣ, ଭରିଛି ପୁଲକେ ଗାଉଛି ଗାନ
ପୁଣ୍ୟ କିରଣେ ଫୁଟୁଛି ପ୍ରେମ ଟୁଟୁଛି ମୋହର ବନ୍ଧରେ ।

* ଗଗନର ଥାଳେ ରବି ଚନ୍ଦ୍ର ଜ୍ୱଳେ
ତାରକା ମଣ୍ଡଳ ଚମକେ ମୋତିରେ
ଧୂପ ମଳୟାନିଳ ପବନ ଚାମର କରେ
ସକଳ ବନରାଜି ଫୁଟନ୍ତି ଜ୍ୟୋତିରେ
କାହାର ଆରତି ହେ ଭବଖଣ୍ଡନ ତବ
ଅନାହତ ଶବଦେ ବାଜେ ଭେରୀରେ ।

(ନାନକ ଗୀତର ଛାୟାରେ ରବୀନ୍ଦ୍ର ନାଥଙ୍କର ବଙ୍ଗଳା ଗୀତର ଅନୁବାଦ)

ପରଶ ତୋହର ଯେ ଲଭିଲି ରୂପେ
ଦେଖିଲି ପ୍ରଥମ ଦିନ ଯେବେଠୁ ତୋତେ ।
ବିଧାତା ରୂପ ଦେଇ, ଜନମନ ମୋହାଇ,
ଧରାକୁ କରିଛନ୍ତି ସରଗଝରି ଯେତେ । ୧ ।
ଦେଖିଲି ଥର ଥର, ମୁହିଁ ଗୋ ଯେତେ ଥର,
ମୋ ପ୍ରାଣକୁ ମୋହିଲ ତୁମ୍ଭେ ଅପୂର୍ବ ରୀତେ । ୨ ।
ସ୍ନେହ ମଧୁ ପୂରିତ, ସେହି ଆନନ ପୂତ,
ଜୀବନେ ଦେଖି ଅପୂର୍ବ ସ୍ନେହେ ଭରେଁ ମୁଁ ଯେତେ । ୩ ।
କାଲି ରାତିରେ ପାଶେ, ରହିଲ ସ୍ନେହବଶେ,
ଦେଲ ଯେ ମୋତେ ସ୍ନେହ ସାଗରେ ସ୍ନାନ ପରତେ । ୪ ।
ବଢ଼ିବ ଏହି ସ୍ନେହ ମଧୁ ମଧୁର ତୋହ
ମୋ ମନ ସରସିବ ପୁଲକ ଭର ଚିତ୍ତେ । ୫ ।



— ୨୩ —

ଜୟ ଭାରତ ଜୟ ଭାରତ
ମୁକ୍ତ ଜନ ବନ୍ଦିତ ଭାରତ ହେ ।
ଦୀର୍ଘ ରାତ୍ରି ସୁପ୍ତ ସେ ଯେ ଆଜି ଉଜାଗର
ତପସ୍ୟା ତାହାର ପୂର୍ଣ୍ଣ ହେବ ହେ ଅପାର
ଉତ୍କଳ ତହିଁରେ ଦେଖ ଜାଗିଛି ସୁନ୍ଦର
ହୋଇ ଏବେ ନବକୁସୁମିତ ହେ । ୧ ।

କଳଙ୍କ ଦାୟାଦ ଉଠ ଏବେ ମାତ୍ର ଯେତେ
ଶୋଭୁ ପୁଣି ତୋ ଜନନୀ ଅମୃତର ସ୍ରୋତେ
ଯୁଗ ଯୁଗାନ୍ତରୁ ଆସି ରହିଛନ୍ତି ଏଥେ
ସକଳେ ହୁଅନ୍ତୁ ସେ ପ୍ରାଣମିତ ହେ । ୨ ।

ପରସ୍ପର ସ୍ନେହ ଯେନ ହନ ନାଥ ସୁଖେ
ଭରି ରହୁ ପ୍ରେମ ତୋର ଦେଖୁ ଆଖି ମୁଖେ
ଦିବସ ରଜନୀ ମାତ୍ର ସର୍ବେ ସୁଖେ ଦେଖେଁ
ଜୀବନେ ଆଜି ମୁହିଁ ଉଲ୍ଲସିତ ହେ । ୩ ।

ଜଗତରେ ସର୍ବେ ସୁଖେ ରହନ୍ତୁ ଉତ୍କଳେ
ପବିତ୍ର ଏ ଦେଶ କରୁ ପବିତ୍ର ସକଳେ
ଝଙ୍କାର ଉଠନ୍ତୁ ମନ୍ତ୍ରେ ଆନନ୍ଦ ବନ୍ଦ୍ୱଲେ
ସର୍ବେ ହୁଅନ୍ତୁ ଆଜି ପୁଲକିତ ହେ । ୪ ।



—୧୪—

ଆସ୍‌ତ ସୁନ୍ଦର
ରାଜିବ ସୁନ୍ଦର
ରହିବେ ନାହିଁ ଦୁଃଖୀ
ସକଳେ ହେବେ ସୁଖୀ ।
ରାଜା ମହାରାଜା
ଆଉ ଦୀନ ଦୁଃଖୀ ନିର୍ଦ୍ଧନ
ରହିବ ନାହିଁରେ ଏହି ଅସମ ବିଷମ ବିବର୍ଦ୍ଧନ ।
ସକଳ ହେବେ ସୁଖୀ
ପରସ୍ପର ଅପେକ୍ଷି
ଯିବ ଚାଲି ଭୀଷଣ ଭୟଙ୍କର
ଅନ୍ୟାୟ ଅହଙ୍କାର ଅତ୍ୟାଚାର
ଶାନ୍ତିର ରାଜ୍ୟ ଜଗତେ ହେବ ସ୍ଥାପିତ
ଜୟ ଜୟ କର ହେ କିଏ ଅଛ ତାପିତ ।
ସଂସାର ହେବ ସୁନ୍ଦର
ଦୂର ହେବ ମଳିନ ହୃଦୟ ମନ୍ଦିର
ସକଳେ ରାଜିବେ ସୁନ୍ଦର ।
ରାଜା ଦିଅ ତୁମ୍ଭ ଛତ୍ର, ଦିଅ ତୁମ୍ଭ ଧନ,
ଦିଅ ତୁମ୍ଭ ମନ
ଭାଇ ଭାଇ ହୋଇ ଏବେ ନୂତନ ଜଗତେ
କର ତୁମ୍ଭ ଜୀବନ ଯାପନ ।
ନୋହିଲେ ସର୍ବନାଶ ହେବ ତୁମ୍ଭର
ନାଶ ହେବ ସେ ଅନ୍ୟାୟ ଅତ୍ୟାଚାର
ଭୂଲୁଣ୍ଠିତ ହୋଇ ଜଗତେ ଜଣେ

ରହିଥିବେ ଜାଣିଥାଅ ଯେତେକ୍ଷଣେ ।
ଏ ସଂସାରେ ତୁମ୍ଭର ମୋହର
ସମାନ ଅଧିକାର
ଧନୀ ନିର୍ଦ୍ଧନ ଏହା ଅନ୍ୟାଯ୍ୟ ବିଗ୍ରହ ।
ମୋର ଅଭାବ, ମୋର ଶକ୍ତି
ଦିଅ, ପୂର୍ଣ୍ଣ କର, ହେବ ମୁକ୍ତି ।
ଜଗତେ ବାନ୍ଧ ଅସଂଖ୍ୟ ମାନବେ
ପରାଧୀନତାର ନାନା ଶୃଙ୍ଖଳେ
ଚତୁର କେତେଜଣ ଆଉ ଲଭବେ ନାହିଁ
ଜାଣ ଅମୃତ ଫଳ ଆନନ୍ଦ ଭୋଗିଲେ ।
ରୁଷିଆର ଜାର ହୋଇଛି ଛାରଖାର
ଜର୍ମାନୀର ରାଜା ହୋଇଗଲେ ପରଜା
କେତେ କେତେ ଦେଶ ହେଲେଣି ଯେ ବିବଶ
ଧନୀର ଅହଙ୍କାର ପ୍ରତିପାଦନ ପାଏ ଧିକ୍କାର ।
ଅଙ୍ଗ ଧଳା କଳା ଲୋହିତ ପୀତ ସକଳେ
ଭାଇରେ ଯେ ସହିତ
ଆସ ଏ ସଂସାରକୁ ସ୍ୱର୍ଗ ରାଜ୍ୟ ପରିବର୍ତ୍ତିନ
କରରେ ହୋଇ ମୋହିତ ।
କହିକୁ ଶାନ୍ତି, ବହିକୁ ଆନନ୍ଦ
ବହିକୁ ମୋକ୍ଷରେ
ତୁମ୍ଭେ ହଳାହଳ ଯେମ ହତ୍ୟା କର
ନ ହୁଅ ହର୍ଯ୍ୟକ୍ଷରେ ।
ପଶୁର ହନନ, ପଶୁର ବଳ
ରହିବ ନାହିଁ ଏବେ

ସାଧୁ ସୁନ୍ଦର ହୋଇ ସକଳେ
ପ୍ରେମି ରାଜ ଗୌରବେ ।
ବିଧାତାର ରାଜ୍ୟେ ସକଳେ
ସୁଭୋଗି ହେ ସୁଭଗ :
କର ଅନନ୍ଦ ଦିଅ ଆନନ୍ଦ
ହୁଅ ଅନୁରାଗ ।
ଯାଉ ଦୂର ହୋଇ ଯୁଦ୍ଧ, ଯାଉ ଦୂର ବୁଭୁକ୍ଷା,
ଜୀବନର ସାର କର ପ୍ରେମ ସଞ୍ଚାର
ଶତ୍ରୁ ମିତ୍ର ଭେଦ ଆଉ ନ କର ।
ଶତ୍ରୁ କେହି ନାହିଁରେ
ସ୍ୱାର୍ଥରେ ମାତରେ,
ଦେଖୁ ତୁ ଶତ୍ରୁଖିକାଟରେ ।
ଆସୁଛି ମଙ୍ଗଳ ରାଜ୍ୟ ଭାରତେ ହେବ ସ୍ଥାପିତ
ପ୍ରେମର ରାଜ୍ୟ ଜଗତେ କେତେଅତେ ହେଲାଣି ଉଦିତ
ବିଦ୍ରୋହର ବାଜଣା ବାଜଇ ଦୂରେ
ସମର-ସଜ୍ଜା ପାଇଁ କେତେ ଜାଗରେ
ଭାରତ ଅନାଇ ରହେରେ ।
ହେ ରାଜନ ! ହେ ଧନୀକ
ହୁଅ ଏବେ ମାନବ ପ୍ରେମିକ ।
ନୋହିଲେ ଭାଗ୍ୟ ତୋହର ହେବ ଯେ ମନ୍ଦ
ଜୀବନ ଯିବ ଅକାରଣ ହେବ ଯେ ଦ୍ୱନ୍ଦ୍ୱ ।
ଭାରତ ସୁନ୍ଦର ଭାରତ ଏବେ ହୋଇଛି ଦୁଃଖିତ
ଏହାକୁ ସୁନ୍ଦର କର ସକଳେ ହୁଅ ପୁଣି ମହତ ।
ନାଶିର କଣ୍ଟ ନାଶିର ଅବଗୁଣ୍ଠ

ଏବେ ପାଉ ମୁକ୍ତିରେ
ସ୍ୱାଧୀନତା–ସ୍ୱନର ହୋଇ ଶୃଙ୍ଖଳ
ସକଳେ ପ୍ରୀତରେ ।
ପରସ୍ପର ଅବଲମ୍ବନ, ପରସ୍ପର ଶୋଭନ,
କିପା ଏକର ବନ୍ଧନେ, ତୁମ୍ଭେ ହେବ ମୋହନ ?
ନାହିଁ ନାହିଁ ନାହିଁ ଆସିଛି ମୁକ୍ତି
ଆସିଛି ସ୍ୱାଧୀନତା, ଆସିଛି ପ୍ରୀତି,
ଜାଗ ଜାଗ ଜାଗ ହେ ଯୁବକ ପ୍ରବଣ
ରକ୍ତ ତୁମ୍ଭର ପ୍ରେମେ ଦଅ ଢାଳି ଆରତ ।
କିଏ ଅଛ ତାପିତ, କିଏ ଅଛ ଅଭୁକ୍ତ
ଉଠ ଆହେ ଆସିଛନ୍ତି ନୂତନ ଲୋକେ ନୂତନ ଯୁଗ ତ ।
କରିବେ ଉଦ୍ଧାର, ବାଣ୍ଟିବେ ଅଧାର,
ସକଳେ ପିଅର, ନ ରହିବେ ଶତ୍ରୁ କେହି କାହାର ।
ଆସିବ କି ଯୁବକ, ଦେବ କି ହାତ
ଏହା କରିବାକୁ ପୂର୍ଣ୍ଣ ହେବାକୁ ମହତ ?
ଆସ ଆସ ନ ରହି ଅହେ
ସୂର୍ଯ୍ୟର ଆଲୋକେ ଦେଖ ଅହେ
ଜଗତ ବାସୀ
ହେଲେଣି ଆସି
ପ୍ରେମେ ଉଚ୍ଛନ୍ନ
କେହି ନ ରହିବେ ଅବସନ୍ନ ।



—୨୫—

ବଡ଼ ବଡ଼ ବୃକ୍ଷ ପର
ଖୋଲି ଦଅ ହୃଦୟ ଫୁଲ ଘର
ଶୁହଁ ଶୁହଁ ଅକାଶ ହଗନ୍ତ ହେଉ
ମଳୟ ବହେ ନିର୍ମୁକ୍ତ ଭାର
ନୃତ୍ୟ କର ନୃତ୍ୟ କର
ବୈଶାଖୀ ଅପେ ସ୍ୱୈରଣୀ ପର
ଉଠେ ନଭେ ନିର୍ମଳ ଗନ୍ଧ ମୋହର
ଦେଖ ଆନନ୍ଦେ ଯାଏ ଗଗନ ଭୁବନ ପୂର ।



—୨୭—

ମାନବର ଖୋଜ ଅନ୍ତରେ
ଥଛନ୍ତ ତହିଁ ସକଳ ମାନବ ଭୂମି ଉତରେ
ଅଛୁ ସକଳ ପଦାର୍ଥ ପୁଣି ତହିଁ
ଅନ୍ତରେ ଯାହା ନାହିଁ ବାହାରେ ତାହା କାହିଁ ?

ଖୋଜ ଅନ୍ତରେ ପାପର ମୂଳ
ନାଶ କର ତାହା କର ନିର୍ମୂଳ
ଅଛୁ ତହିଁ ସେହି ଚନ୍ଦ୍ରା ଅନିର୍ମଳ
ସାଧୁ ଜନ ସକଳ
କରି ପାରନ୍ତି ତାଙ୍କୁ ନିର୍ମୂଳ ।



—୨୭—

ଦୀପ୍ତ ତାରକା ଅନ୍ଧାରେ ମଗନ
କ୍ଳାନ୍ତ ସୂର୍ଯ୍ୟ ଜଣାଏ ସ୍ୱପନ
ଚନ୍ଦ୍ରର ହାସ ଗୁଳିଯାଏ କାହିଁ
ଅମ୍ମା ମୋର ଖୁଲିଥାଏ, କେବେ ମରେ ନାହିଁ ।୧।

କାଳର ଚକ୍ର ଘର୍ଷିତ ହର ଅନେକ
ଚନ୍ଦ୍ର ତାରକା ଅଛ ଏକା ଏକ
ନବଭର୍ତ୍ତା ଭୂଷା କେତେ ଯାଏ କାହିଁ ପଳାଇ
ଅମ୍ମା ମୋର ଗୁଳି ଥାଏ, କେବେ ମରେ ନାହିଁ ।୨।

ଫୁଟିଥିଲା କେତେ ଫୁଲ ଶୁଖି ଝଡିଗଲା ଭୁଅଡ଼େ
ବୃକ୍ଷର ଶରୀର ପୁଣି ଧରେ ଫୁଲ ଧୀରେ ଧୀରେ ଧୀରେ
କେତେ ଅଧିପତି କେତେ ମହାରଥୀ ଯାଇଛନ୍ତି ଭୂଲେଇ
ଅମ୍ମା ମୋର ସଦା ଗୁଳିଅଛି, କେବେ ମର ନାହିଁ ।୩।



—୨୭—

ପାଗଳ ପର ଉଡ଼ଲା ହୋଇ ବହୁଛି ଦକ୍ଷିଣା ପବନ
ବୈଶାଖର ତାତରେ ପାଚୁଛି ଆମ୍ବ ଡାଳେ ଡାଳେ
କୋକିଲ ଗାଉଛି ବକଳେ
ଶୀତଳ ଚନ୍ଦନ ଅବନା ଅମୋଦ ଗୁଳିଛି
ଲଢାସୁନ୍ଦରୀ

ମଧୁକର ମୃଦେ ଗୁଞ୍ଜରେ ବସି ପୁଷ୍ପୋପର
ଲଜ୍ଜାମୁଗ୍ଧା ଲତା କମ୍ପୁଛି ଯେବେ ବାତରେ
ଧଡେ କି ସେ ନବୋଢ଼ା ନବଯୁବତୀରେ
ଜମ୍ବୁ ନାଦ ଘୋଷ କାହାର ହେଉଛି କନ୍ଦ
ବିଶ୍ୱରାଜାର
ବସି ବସି ମୁହିଁ, ଶୋଇ ଶୋଇ ରହି
ଦେଖା ନ ହେଲା ତାହାର
ବିଫଳ ଜୀବନେ ଅଛି କି ଆଶା
ଅଳ୍ପ ରହୁଛି କି ଆସିବ ଫେରି ପରା ମୋ ଦଶା ।





ମଙ୍ଗଳ ପ୍ରଭାତେ ମଙ୍ଗଳ କର ମୋତେ
ଯେ ଯହିଁ ଅଛ ଗୃହିଁ ମୋତେ ଈଷିତେ
ମଙ୍ଗଳେ ପୂରୁଅ ମୋର ମନ
ମଙ୍ଗଳେ ପୂରାଅ ମୋର କାର୍ଯ୍ୟ କଥାମାନ
ଦିନ ଦିନ କରି ଦିବସ ଦେଲା କାହିଁ ଉନ୍ନତି କାହିଁ ?
ଉତ୍କଳର ଉନ୍ନତି କାହିଁ, କାହିଁ ଉତ୍କଳର ଉନ୍ନତି କାହିଁ ?

ଏ ଜାତି କି ଉଠିବ ପୁଣି ଭାରତ ଜଗତେ
ବିଶ୍ୱାସ ହେଉ ନାହିଁ ତଳେ ହେଲେ ମୋତେ
ଏ ଜାତିର ପିତାମାତାମାନ ଏ ଜାତିର ଯେତେ ସନ୍ତାନ
ସବୁ ହୀନ, ଦୁ[illegible], ଅତି ତୁଚ୍ଛ ଜନ

କପର ଉଠିବ କନ୍ଦ ଏ ଜାଭ
ନ ଦେଖିଲେ ବର୍ତ୍ତମାନର ଉନ୍ନତି ସ୍ରୋତ
ପଡ଼ି ରହିବେ ସକଳର୍ ପଶ୍ଚାତେ ବୃଥା ଈର୍ଷା
ଅପମାନେ ସହି ଦେଉଥିବେ ଅମଙ୍ଗଳ କରିବେ ବର୍ଷା ।



—୩୦—

ମଧୁ ଆଣିଥିଲ ମଧୁ ପାତ୍ରେ
ପିଇଥିଲ ତାହା ସ୍ନେହ ନେତ୍ରେ
କଥା କହିଥିଲ କମ୍ପିତ ଅଧରେ
ଦେଇଥିଲ ମୋହ ମୋହର ଗାତ୍ରେ,
ସେହି ଦିନୁଁ ହିଆ ମୋହବଶ
ଯାଉଅଛି ଭାସି ପ୍ରେମରସ
ଗୃହଛି ଜୁଅର ଗଙ୍ଗାକୂଳେ
ତରଣୀ ମୋହର ତହିଁ ଗୃଲେ
କେଉଁ କୂଳେ ଅଛି ସେ ଲାଗିବ
କଳପନା ମୋର କି ଜାଗିବ
ନ ଜାଣୁ ସେ ମୋର ମୁଁ ତ ଭୋର
ଆରମ୍ଭିଛି ଦେବ ପ୍ରେମପୂର
ଯଦି ନ ଜାଗିଲା, ମଧୁ ନ ଭରିଲା,
ମୋହେ ମୋହେ ମୁହିଁ ବାହିନେବ ଭେଳା
କେବେ ବା ଶୁଖିଲା, ହେବେ ନଦୀ ଭରା
ଢେଙ୍ଗା ନଉ ଥାଉ ସାଙ୍ଗରେ ପାସୋରା

ଆସିଲେ ନୂଆର ଆସିବେ ସୁନ୍ଦର
ପ୍ରେମବିମୋହନ ହୃଦୟ ମୋହର
ନଈ ବାଲି ପରେ ଥିବ ଗୋ ପଡ଼ି
ଜଡ଼ ନଡ଼ ଜଡ଼ ରେଣୁ ତାହାର ।

ଦୀର୍ଘ ଗ୍ରୀଷ୍ମକାଳ ଗଲା ଏବେ
ପ୍ରେମ ପୁଲକ ଯେ ମୋତେ ଦେବେ
ନଈ ବାଲି ପରେ ଥିବା ରହି
ସନ୍ଧ୍ୟା ତାରା ଥିବ ବସେ ଉଇଁ
ତାହାକୁ ଅମେ ଗୋ ଆମ ସାକ୍ଷୀ
କରିବୁ ଜୀବନେ ପ୍ରେମ ରକ୍ଷି ।



—୩୧—

ନିଶାନ୍ତେ ଦିନାନ୍ତେ ବସି ବସି ନୁହେ
ଭାଳ ଭାଳ ନୁହେଁ
କର୍ମ କର କରି
ଦିନ ରାତି ଦିଏ ଅତିବାହି ।
ମୋର ଭାବନାର ଘରେ
କିଏ ସେ ବସି ରହେ ରେ
ମୋର ଜୀବନସଙ୍ଗିନୀ
ନୋହି ସେ ମତ୍ତ ରଙ୍ଗିଣୀ
ରହିଛି ଅନାଇ ଦିବସ ରଜନୀ
କେବେ ଆସୁଛି ରାତିପାହି ।

କାହାକୁ ଲଭିବା ହୃଦୟ କତି
କରଛି ଯାଏ ସେ କଏ ମୋ କ୍ଷତ
ମୁଁ ଶୀତ ଗ୍ରୀଷମେ କାହାର ପାଇଁ
କାହାକୁ ଲୋଡ଼େ ତା ଜାଣଇ ନାହିଁ
ଖାଲି କି ମୋହର ପାଇଁ ?

ଜଗତ ସାକ୍ଷୀ ସକଳ ନରମାଖି
ଚାଲିଛି ଜୀବନ ପଥେ
ଭୁଲ ଭ୍ରାନ୍ତି ଅଛି ମୋହର
ମାନବ ପରା ଅଟେ ମୁଁ ଛାର
କେବେ କାହିଁ କି କନ୍ଧ
ଜୀବନ ମୋର ଦନ୍ଧ
ଲଭିବ ଲଭିବ ଶାନ୍ତି
କରମ ଯେବେ ହେବ ପରିଷ୍କାର
ଶୁଦ୍ଧ ହେବ ଯେବେ ଜୀବନ
ନିର୍ମଳ ପ୍ରଭାତେ ନିର୍ମଳ ଭାବେ
ଲଭିବ ପୁଣ୍ୟ ସ୍ନିଗ୍ଧ ଶିହରଣ
ଜୀବନ ଜୀବନ ଜୀବନ
ଲୋଡ଼ା ଜୀବନ ଜୀବନ ଜୀବନ
ଆସ ଶିଶୁ ଆସ ସାଥୀ
ଆସ କରମର ପ୍ରାର୍ଥୀ
ଆସ ଆସ ମୋ ସାଥେ
ଏକାକୀ ରହିବ ମୁଁ ଅବଶ ରାତେ
ଏକାକୀ ରହିବ ମୁଁ ତୁମର ସାଥେ

କରୁଣାଭରା ଧରଣୀ ରାଣୀ, ମା' ମୋର
ଏତେ କରୁଣା ରଖିଛୁ ଭରି, ଅନ୍ତରେ ତୋର,
ଜୀବନର ମୂଳେ ମା ତୋ' କରୁଣା ଝର
ଶାବକର ମୁଖେ ଦିଏ ଝରାଏ ଝର ?

ମାତୃବକ୍ଷ ଝରେ ବହେ ଯେ ଅମୃତ
ତହିଁତ କାହାର କରୁଣା ଇଙ୍ଗିତ ?
ଯେ ଯେ ତୋହର ମା,
କରୁଣାମୟୀ ଜନନୀ, ସେ ମୋହର ମା ।

କର ତୁମେ ମୋତେ ଅସୀମ ଦୟା
ଦିଅ ମୋତେ ତୁମେ ତୁମର ସକଳ
ମୁଁ ପାଇ ଏତେ ଦୟା
କାହିଁକି ଅବର ହୁଏଁ ଏତେ ବିକଳ ?

କାହାର ଅନନେ ରଖିଛ ଅମୃତ ଭରି
ରୂପେ ରସେ ଗନ୍ଧେ ଶବ୍ଦେ
ଥସେ ପରଶ ତୋହର, ସାକ୍ଷୀ ତୋହର
ଜନନୀ ଧରଣୀ ତୋ କୋଳେ ରଖିଛୁ ଅମୃତ ରୂପ,
ମୁହିଁ ସେଥିପାଇଁ ବନ୍ଧ ରହେଁ ଭୋଳେ ନୟନ ଭରି
ବିଳାସର ମୋହ କାହିଁ ମୋହର
ହୃଦ କନ୍ଦ ଭାଲେ ଅଭାବେ ଜା'ର
ରହି ରହି କାନ୍ଦେ
ଅକୂଳ ସଂସାରେ ମୁଁ କାହାର ପାନ୍ଥେ
ଗୋ କାହାର ପାନ୍ଥେ ?

ପ୍ରକୃତିର କୋଳେ ମୁଁ ପ୍ରକୃତିର ସନ୍ତାନ
ପଶୁ ପକ୍ଷୀ କୀଟ ପତଙ୍ଗ ସବେ ମୋ ଭାଇ ଜାଣ
ମୂର୍ଖ ଅଜ୍ଞାନ ଯଥା, ପଡ଼ି ରହି କହେ କି କଥା,
ମୁଁ ନିଜେ ଜାଣିଇ ନାହିଁ, କାହିଁକି ମୁହିଁ କହିଥିଲି ।

ସଂସାର ମୋହର ହୋଇଛି ସାର
ସଂସାରେ ହେଣୁ ହୁଏଁ ମୁଁ ନାରଖାର ।

ଆଜି କରୁଣାମୟୀ ମା ମୋର
ବୁଝାଇ ଦେଉଛନ୍ତି ଅତି ସୁନ୍ଦର
ସକଳେ ପ୍ରେମରେ ଭର
ଯାଅ ଆନନ୍ଦରେ ବୋଲି ହରି ହରି
ପ୍ରେମ ସୁନ୍ଦର ହୁଅରେ ଆବର
ଯିଏ ଯହିଁ ଅଛି ଯେତେ ନାରୀ ନର ।

ଉଠିଲାଣି ଚନ୍ଦ୍ର ମୋହିବ ଜଗତ ବକ୍ଷ
ମୋ ଚନ୍ଦ୍ର ଉଦବେ ନାହିଁ କି ମୋ କକ୍ଷ ?
ଦୟାମୟୀ ସ୍ନେହମୟୀ ମା କୋଳେ
ଛଳିବା ପାଇଁ ତୋ ସଙ୍ଗେ ଖେଳେ
ଏବେ ବସି ରହେଁ
ହେ ପ୍ରିୟ ! ଆସ ମୋହେ

ଶୀତଳ କର ତପ୍ତ ପରାଣ, ପୂର୍ଣ୍ଣ କର ମୋହ ଜଣାଣ
ମୁଁ ତୁମ୍ଭ ପଦ ଧ୍ୟାୟି, ତୁମ୍ଭ ମୁଖ ଚାହିଁ
ଅକୁଳ ବ୍ୟାକୁଳ ହୋଇ, ସକଳ ଭୁଲି ଭାଇ,
ଖାଲି ବସିବି ରହି ତୁମ୍ଭର ପାଇଁ ।

ସେତ ସେ ଦିନର କଥା
କିନ୍ତୁ ବୁକେ ଥିଲା ଯେତେ କଥା
ସବୁ କି ଦେଇ ନାହିଁ ତୋତେ ?

ଖାଲି କ କଥା ଥିଲା ଯେତେ, ଦେଇଛି ସବୁ ଥିଲା ଯାଃ ଗୁପତେ
ସ୍ନେହ, ପ୍ରେମ, ଭାଷା, ଭାବ,ଅମୃତ, ସେବା,
ତୁମ୍ଭେ ଯେ ଏବେ ମୋର ଚିର ଚିତ୍ତମନଲୋଭା ।
ବହଇ ମଳୟ ସେ କାହାର ପାଇଁ
ମୁଁ ଯେ ବସିଛି ଭାକ ସଖା ତୋହର ପାଇଁ
ଅନନ୍ତ ଜଗତସାଇଁ, ମିଛ କହୁ ନାହିଁ,
ବ୍ୟର୍ଥ ପରଶେ, ପୁଲକ ଅଣିଛ, ସାର୍ଥକ କରଛ ପ୍ରାଣ ମୋହ ।
ନିରର୍ଥକ କେଣେ ହୋଇ ରହିଛ
କା ସଙ୍ଗେ କଥା କହୁଛ, କାହା କଷଣ ସହୁଛ ?
ପିବ କି ସଂସାରୁ ଲୁଚ ତୋତେ ନ ଦେଖି
(ପ୍ରିୟ ପରଶ ମୋର)
ମାଗେ ଏତିକି, ମରିବ ତୋ ହାତେ ହାତ ରଖି ।
ଦେବ ମୋତେ କରୁଣା ଦୃଷ୍ଟି
ହବୁଁ ଦେବ କରୁଣା ବୃଷ୍ଟି ।

ଆଉ ନ ଦହ ଏ ପରଶ
ହେ ସଖା ! ହେ ପ୍ରିୟ ! ହଅ ଚୁମ୍ବନ, ତୋ ଅଶୀଙ୍କତନ
ଜୀବନ-ଦୀପ ଲିଭୁ, ଯାଉ ମୋହର ସବୁ
ନୀରବେ ଚକ୍ଷୁ ମୁଦୁ, ପୁଲକ ଜନ୍ମି ହୁହୁଁ
ପରଶ ମୋର ଭେଦୁ, ହାତେ ହାତ ମୁଦୁ,
ଲକ୍ଷ୍ଣ ଯିବ ଗୃହ ଖାଲି, ତୋତେ ଭାଳ ।



— ୩୨ —

ମନ୍ଦାର, ମନ୍ଦାର, ମନ୍ ଦାର, ମନ ଦାର
ରକ୍ତ ରାଗରେ ରାଜୁଛ ସୁନ୍ଦର
ଗଗନର ଅରୁଣ ରାଗର ଆଭା କି ଚୋରାଅ
ଜବାକୁସୁମ ସଙ୍କାଶ ଉପମା ଦେଲେ ଋଷିବର
ଶ୍ୟାମଳ ପତ୍ର ଗହଳେ, ଗୋଛ ଗୋଛ କର ଫୁଟି ଉଠିଛ ମନ୍ଦାର ।
ଆଜ ପ୍ରଭାତର ଗୌରବ ସେ କି ବାହାର
ପାଶେ ଅଛି ତଗରଟି, ଶ୍ୱେତ ରୂପ ବରଣ
ହସେ ମୋହନ, ଉପମା ରାଧାକୃଷ୍ଣର, ଉଭା ପାଶ ପାଶର ।
ମନ୍ଦାର ମନ୍ଦାର ରାଜୁଛ ସୁନ୍ଦର
ତୁମ୍ଭେ କି ମନଦାର ? ମୋହ ଦାର ?
ଧାରଣ କରି ବର୍ଦ୍ଧକୀ ଯେବେ ଗଢ଼େ ସୁନ୍ଦର
ତୁମ୍ଭେ କି ଅବା ମନ ଦାର, ଅବା ଚିତ୍ତ ପୁରନ୍ଦର ?
ଅବା ତୁମେ କି ସତେ ମନଦାର, ଦାରୁ କାହାର
ସୁନ୍ଦର ରାଜ ପଥ ଶିବ ଶିର
ମନ୍ଦାର ମନଦାର, ସତେ ତୁମ୍ଭେ ଦାରୁସମ ଚିତ୍ତ ହର ।
ଯୌବନ ସମ ପ୍ରେମ ଅପାର, ଜୀବନ ନୂଆର,
ଉଭା ହୋଇଛ ପ୍ରଭାତ ଦୁଆର
ଅପେକ୍ଷିଛ ଯେବେ ପରଶ କାହାର,
ଧନ୍ୟ ଭାଗ୍ୟ ମୋହର, ଆଜ ଏ ଭାଗ୍ୟ ମୋହର,
ଦେଖିଲି ବକର ରକ୍ତ ସୁନ୍ଦର ମନ୍ଦାର ।
ଆଜ୍ଞା ଆସ ମୋ କଭ, ଖଡ଼ିକ ଖଭ, ଟିକାଇ ଅଭ, ପୁଲକେ ଯିବା ମାତ୍ର
ଭୁଲି ସବୁ ଅପରାଧ, ନ ଗଣି ପରମାଦ ।

ଆଜି ଫୁଟୁଛି ମନ୍ଦାର, ରକ୍ତ ଅଧର
ଆଜି ଶୋଭୁଛି ଟଗର, ସୁନ୍ଦର ବର୍ଣ୍ଣ
ଆଜି ଶୋଭୁଛି ମାଳମାଳ, କେତେ ମରକତ ଘାସ ଗୋଲ,
ଆଜି ଫୁଟୁଛି କେତେ କୁଞ୍ଜଲତା, ରାଜିବ ତୋ ଦେହେ ଯଥା ।
ବାରିଦ ଯାଉଥିବ ଗଗନେ ଧାଇଁ
ସମୀର ଯାଉଥିବ ଉଲ୍ଲାସେ ବହି
ବିହଗ ଯାଉଥିବ ଆକାଶ ଛାଇ
ସକଳେ ଯିବେ ଆହା କ୍ଷଣକେ ରହି
କ୍ଷଣି କ୍ଷଣ କରି ଦିବସ ନେବେ ବାହି
ଆଜି ପ୍ରଭାତ ଦେବ ମୋହି
ସକଳ ଜନ ଆସ ଆମ ସହି
ତୁମ୍ଭେ ହେବ ଖାଲି ଫୁଲରେ ଶୋହି
ମୁଁ ଆଜି ଦେବି ଖାଲି ଫୁଲରେ ସଜାଇ ।



— ୨୩ —

ପଥ ପ୍ରାନ୍ତରେ ରହିବ ପଡ଼ି
ବାଟୋଇର ଛଡ଼ା ଯେଉଁଠାରେ ଅବହେଳେ ଯାଏ ପଡ଼ି ।
ଆସିବ ଯଦି ସଖା ଏହି ବାଟରେ
ହେବ ଯଦି ମନଲୋଭା ଝାଡ଼ି ମୋତେ ଉଠାଇବ ରେ ।
ଦିଗଦିଗନ୍ତ କାଳ ଅନନ୍ତ କେତେ ଅନାଇ ଅଛନ୍ତି
ତୋହର ମୋହର ସ୍ନେହ ସମ୍ଭାର କେତେ ଜାଣନ୍ତି
କେତେ ଜାଣନ୍ତି ନାହିଁ

ମୁଁ ଯାଉଛି ତୋହର ଆଶାରେ ଭୁବନ ବୁଲିବି
କାୟା ନ ପାଇଲେ ଛାୟା ଦେଖି ତହିଁ ଭୁଲିବି
ମଳୟ ପବନ ବେଗେ ବହୁଣ ହୁଅ ମୋର ପୁଲକେ
ଗୃଲଯାଏଁ ସୁଣି ଦେଇ ଦାରୁଣ ଶୋକେ
ତୋତେ ପାଇଲେ ପାଇବି, ନ ପାଇଲେ ମରିବି ଶୋକେ ଦୁଃଖେ ।
ମରମେ ଖାଲି ତୋ ନାମ ଲେଖିବି
ନୟନେ ଖାଲି ତୋ ନାମ ଦେଖିବି
ବଦନେ ଖାଲି ତୋ ନାମ ଘୋଷିବି
ରହିଥାଅ ସାକ୍ଷୀ ହେ ଜଗତ ପକ୍ଷୀ ବିହାୟସେ ଉଡ଼ି
ମୋ ବାରତା ଦିଅ ହେ ତାକୁ ଯାଇ ଉଡ଼ି ।
ସେ ତ ଅଦ୍ଧା ଗୃହିଁ ଥିବ
ଅଶା ନେତ୍ରେ ବସିଥିବ
ମୋ ଯିବାର ବିଳମ୍ବ ହେଲେ କିବା ସେ ଧାଇଁ ଆସିବ
ଉନ୍ମୁକ୍ତ ପ୍ରାନ୍ତରେ ଏତିକ ଜଣାଏଁ ବିଧାତା ସମ୍ମୁଖରେ
ସେ ମୋର ଚିରପ୍ରିୟ, ମୁଁ ତାର ବକ୍ଷରେ ଶିଳ ନୁଅଏଁ ।



—୩୪—

ଅଜ ଅସ ମୋ ପାଶୋରି ।
ସାଜ ପାଶେ ମୋର ତୁ ଦୁଃଖହରି ରେ
ଶୂନ୍ୟେ ରହିଛି ମୁଁ ଅନାଇଛି ବନ୍ଧୁଆ ରେ ।୧।
ଜନ ମୋର ତୁହି ନାଥ ।
ସୁଖରେ ମୋ ଦିନମାନ କଟାଅ ହେ
ତୋହ ସେବାରେ ଖଟୁଛି ନାଥ ବନ୍ଧୁଆ ହେ ।୨।

ଶ୍ୟାମ ତୃଣ ଦେଖି ମନ
ଦୂରେ ଦଣ୍ଡେ ଗିରି ଗୋବର୍ଦ୍ଧନ ରେ
ସେ କି କରୁଛି ତହିଁ ଗମନ ବନ୍ଧୁଅ ରେ ।୩।
ନୀଳ ନଭେ ଚାହିଁ ପର
ଇନ୍ଦ୍ରନୀଳମଣି ଦର୍ଶଇ ଚୋର ରେ
ସରମେ କାହିଁ ରହୁଛ ଗୋର ବନ୍ଧୁଅ ରେ ।୪।
ସାର ଧର ବୁଲି ପର
ହେଲି ଏବେ ମୁହିଁ ବେଦନାତୁର ହେ
ଦୟା ହେ ଏବେ ମୋତେ ଭୁ ଧର ବନ୍ଧୁଅ ରେ ।୫।



—୩୬—

ଅଦ୍ଭୁତ ରାତ୍ରି, ଅନେକ ଯାତ୍ରୀ,
ଅଛନ୍ତି ଘେରି ଆକାଶ ଭରି, ସେ ଯେ ଅପୂର୍ବ ଛବି,
ତାରକା ପରସନ୍ଦେ, ନୀଳ ଅଭ୍ର ସନେ, ତହିଁ ମୋର
ପ୍ରେମରତନ, ପାନ୍ଥାନ୍ତିଅ ତାରମଣି, ସୁନ୍ଦର ଜ୍ୱଳ
ରହିଛି ଚହିଛି ସ୍ମିତିରେ ସ୍ପନ୍ଦରେ ଭାଉଛି କିରଣ ।
ମୁଁ ଲୋକ ବିଲୋକ ତା ଆନନ ହୁଏ ପୁଲକିତ ମନ
ସେ ଯେ ମୋ ମନ ନନ୍ଦନ ଦେଉଛି ଭରି, ସେ ଯେ ମୋ ମନୋନନ୍ଦନ
ମୁଁ ଯେ ଯାଉଛି ତାର କଡ଼,
ମୁଁ ଯେ ଚାହିଁଛି ସେହି ପାନ୍ଥାନ୍ତିଅ ତାର
ସେ ଆଉ ମୁଁ, ତନ୍ମ ଆଉ କୋନ୍ହୁଁ
ସେ ଆଉ ମୁଁ ହୋଇଛୁଁ ମହାପ୍ରସାଦେ ଧନ୍ୟ,
ଏକ ଶରୀର, ଏକ ମନ, ହୋଇଛୁଁ ଯେବେ, ଏମନ ମନ ।

ଆଉ କାହାକୁ କହିବ ଏକଥା ଆଉ କହିବ କାହାକୁ
ଯେ ରସଇ ଯାହାକୁ ସେ ମଜ୍ଜି ଯାଏ ତହିଁ ତାହାକୁ ।
ବିଜନ ରାତ୍ରି, ଏକାକୀ ମୁଁ ଧରା ଯାତ୍ରୀ
ଆକାଶେ ରହିଛି ଅନାଇ, ଶୀତଳ ରାତ୍ରି,
ବସିଛି ଥଉ, ଆକାଶ ବହଳ,
ତାରକା ଅଛନ୍ତି ଅଗଣନ, ସେ ମୋର ସାନ ଭାଇ ସମାନ ।

ପାହାନ୍ତିଆ ତାରାଟି ମୋ ମଥାମଣି, ମୋ ହୃଦୟମଣି,
ମୋ କୌସ୍ତୁଭମଣି, ମୋର ଅତି ପ୍ରିୟ ଜାଣି,
ଉଠଇ ମୁଁ ନିତି ନିତି, ଉଠେ ସେ ନିତି ନିତି,
ଦେଖା ଦେବା ପାଇଁ, ସ୍ନେହ ଦେବା ପାଇଁ ଗଭୀର ରାତ୍ରି
ଯେବେ ସୁପ୍ତ ସକଳ ମାନବ ଯାତ୍ରୀ,
ସଂସାର ପଥେ ବୁଲେଁ ଅବିରତ
ଆକାଶ ପଥେ ସେ ଦେଖେ ମୋତେ,
ପ୍ରେମ ବରଷେ ସତତେ, ଦୟା ତାହାର ବହୁତେ,
ସେ ଭଲେ ମୋତେ ନିତି ନିୟତେ,
ମୁଁ ପ୍ରଭାତେ ଭଲେ ଦୁଃଖିତେ
ଯେବେ ସେ ଦେଖା ନ ଦିଏ ମୋତେ
ଦୟାଳୁ ମାତର ପ୍ରେମ ସାର
ସେ ନିତି ଭୋରେ ଆସେ ଯାଚେ କେତେ ସ୍ନେହ ଅପାର ।
ଭାଗ୍ୟ ମୋହର ବହନ୍ତେ ମରେଁ ତଥାପି
କେଉଁ ପୂର୍ବ ଜନ୍ମର ପାପର ସାଥେ ।
ହେଉ ହେଉ, ମୋ ପାପ କ୍ଷୟ ହେଉ, ଲଭିବି ପୁଣ୍ୟ
ହେବ ସେ ମୋହର, କରିବ ମୋହର ହୃଦୟ ପୂର୍ଣ୍ଣ ।
ବନ୍ଧୁ ! ସଖା ! ସ୍ନେହମୟ ! ସୁଜନ !

ତୁହି ରହୁଛ ଅନମେଷେ, କେତେ
ସ୍ୱନରେ ଉଜ୍ୱଳେ କହ ପ୍ରୀତେ ।
ମୁଁ ତୁମ୍ଭର ପ୍ରାଣ ପତ୍ନୀର ଚିତ୍ର ସବୁ ସହିତ
ମୋର ସବୁ ଦେହ ମନ ପ୍ରାଣ ଦେଉଛି ଶକ୍ତ ତ ।
ମୁଁ ତୁମ୍ଭର କିଙ୍କର, କହୁଛି ସତ ସତ ସତ, ତ୍ରିବାର ସତ୍ୟ
ଆଜ୍ଞ ଏହି ବିଜନେ ଏକାକୀ ମନେ କରୁଛି ତ୍ରିବାର ସତ୍ୟ ।






ଦୈବତ ଯୌବନ ଏକାଳ ସେକାଳ ତ
ସଙ୍ଗୀତ ସ୍ୱରେ ସ୍ୱରେ ମିଶିଯାଏ ଅତୀତ ।
ରୁଦ୍ର ! ମୋର ଅତୀତ ବର୍ତ୍ତମାନ ତ
ଭବିଷ୍ୟତେ ମୋ ଜୀବନର କାର୍ଯ୍ୟ କରବ ତ ।
ମୁଁ ତ ଆଜ ଏତେ ଦିନ ହୋଇ ଆକୁଳ ବ୍ୟାକୁଳତ
ଯାଉଛି ସଂଗୀତେ ମୋର ଆକୁଳ ବ୍ୟାକୁଳ ଚିତ୍ତ
ମୋର ଭାବନାର ପ୍ରିୟ ସେ ମୋର ଆନନ୍ଦର ସୂତ୍ର
ଆଜ୍ଞ ଏତେ ଦିନେ ପୁଣି ଦେଖାଦେଲା ଅଚମ୍ବିତ
ମୁଁ କହୁଛି ମୁଁ ଜାଣିଛି ସତ୍ୟ ଏହା ସତ୍ୟ
ଯିଏ ଯାହାକୁ ପାଉଛି ସେ ତାହାର ହୋଇବ
ଏହା ସତ୍ୟ ସତ୍ୟ ସତ୍ୟ ।
ଆଜ ସେ ମୋର, ଦେଖା ଦେଲା ସ୍ୱପ୍ନେ ମୋର ବଡ଼ ଅଚମ୍ବିତ
ଅଚମ୍ବିତ କାହିଁକି ? ବ୍ୟାକୁଳ ହୋଇ ଜୀବନ ନିଏ
ସେହି ସେ, ମୋ ମୋହିତ !

ପ୍ରିୟ ! ସଖା ! ଜନ୍ମ ପ୍ରିୟତମ ମୋର ! ଆସ ତୁରିତ
ଦିଅ ଦର୍ଶନ, ଚିତ୍ତ କର ପରସନ୍ନ, ହୁଅ ଜଡ଼ିତ ।
ମୁଁ ତୁମ୍ଭର, ମୁଁ ତୁମ୍ଭର, ଆଉ ନୁହେଁ କାହାର, ହେ ପ୍ରୀତ !
କହିଛ ସତ୍ୟ ଛିଡ଼ିବାର ତୁମ୍ଭେ ମଧ୍ୟ କହୁଛ ସତ୍ୟ
ଆସ ମୋର ହୃତ ମୁଁ ନୁହେଁ ତୁମ୍ଭର ଅହିତ
ହିତାହିତ ଜ୍ଞାନେ ପୂର ଭଗବାନେ ରହିବା ଆମ୍ଭେ ଏକ ସହିତ
ଅନ୍ଧାର ନୁହେଁ ରାତି ଆଲୋକ ଅଛି ନିଶୀଥ ରାତ୍ରି
ଆଜି ଜଗତ
ଆଶାରେ ଆନନ୍ଦରେ ପ୍ରେମରେ କେତେ ପୁଲକିତ
ଦଶନ୍ଦିଗ ବିଜୟୀ ଦଶମୀ ମୁଁ ବସିଛି ଭୁଲି ତ
ତୁମ୍ଭେ ଥାଉଁ ଛି ସନ୍ଧାନେ ମୋର ଶୂର ଦିଗ ତ
ହେ ଭଗବାନ ! ଯେ ଯାହାର ସେ ତାହାର ଏହି ବିଧିତ
କରିଛ ଉଆଣ, ପୁଣି କାହିଁ କି ଦୁଃଖ ଦୈନ୍ୟ ?
ସେ ମୋହର, ତାଙ୍କୁ ଦିଅ ମୋ ଚିତ୍ତ ସାଥ ।
ମୋର ପ୍ରାଣ ଦହି ଦହି ରହି ରହି ହୋଇଛି
ଯେମନ୍ତେ ହୀନ ସତ୍ୱତ
ଅଜ ଲୌହ କାରାଗାରେ କଏ ଯେମନ୍ତେ
ତାଙ୍କୁ ରଖିଛି ବାନ୍ଧିତ
ଦିବସ ପରେ ଦିବସ ଯାଏ ଏକାକୀ ମୁହିଁ କେତେ
ଭୁଲିଛି ବସି ତ
ଦିଅ ଦୟାମୟ ତାହାଙ୍କୁ ମୋତେ ଚିରକାଳ ତ
କରିଛ ପ୍ରିୟ ତାଙ୍କୁ ମୋତେ ତୁମ୍ଭେ ତ ।
ହେ ଦୟିତ, ହେ ସଖା, ହେ ବିପୁଳ ବିରାଟ
ପୁଲକ ଦାତା, କର ପୁଲକ ଜାତ
ଦେଇ ଏ ଦୁଃଖୀକୁ ମୋର ସେହି ସ୍ନେହ ସାର ସାନ ଗାଇ ତ ।



—୩୨—

ଆଜ ସଂଧ୍ୟା ବିପୁଳ ବଂଧ୍ୟା
ଠାବେ ଠାବେ ରହୁଛି ଅଶ୍ରୁ ବ୍ୟଥା
ଗଗନେ ମେଘ ସରଜନେ
ହଣଇ କେତେ ବିକଟାଳ ରୂପ ବ୍ୟଥା
ଶ୍ରାବଣର ଘନ ଘୋର ଗରଜନ
ଆଜ ନାହିଁ, ମନ ତଥାପି ହୁଏ ଛନ ଛନ
ଆଜ ଏକାକୀ ବସି ବର୍ଷ୍ୟାର ପାଶେ
ଦୂରେ ଦୂରେ ହସେ
ମଳୟ ଆସେ ଶରୀର ପରଶେ
ଏକାକୀ ବସି ବିଜନ ବଂଶୀ
ବଜାଏ ମୁହିଁ ଅନ୍ତରେ ରସି
କେହି କି ମୋହର ଅଛି
ଯିବେ କି ଆସି ମୋ ବୁକୁ ପରଶି
ଆଜ ବିଜନ ବିପିନ ସଂଧ୍ୟା
ମୁଁ ଆଜ ବସି ରହୁଛି ବ୍ୟଥା
ଶିର ଶିର କେବେ ମଳୟ ପବନ
ଥିର ଥିର କରି ଆସେ ପରଶେ ମୋ ତନୁ ମନ
କାହାକୁ ମୁଁ ବସି ରହୁଛି
କେ ହୁଏ ଆଜ ନଇବେ ଭରସି
ଏହି କି ମୋହର ସଂଧ୍ୟାର ଜୀବନ
ବନ୍ଧ୍ୟା ପଡ଼ି ଯିବ ହୋଇ ଛନ ଛନ
ପ୍ରିୟ ଦରଶୀ କେହି ଆସିବେ କି ସହି
କହକହ ମୋତେ ପରାଣ ରହୁ ସେ ଆଶ୍ୱାସ ପାଇ



—୩୮—

ଉଙ୍କାସ୍ତି ଉଙ୍କାସ୍ତି ଉଙ୍କାସ୍ତି ମୁହିଁ
ଉଚ୍ଛନ୍ନର ଉଚ୍ଛନ୍ନର ଜୀବନର ପାଇଁ
ଦିଅ ଗୋ ଦିଅ ଗୋ ଅଭୟ ବର
ଦେବ ଯେତ୍ନେ ଦେବ ଯେତ୍ନେ ମୋହର ଯାଇଁ ।
ମୀରା ଯେ ମୀରା ଯେ ପାଇଲ ସଙ୍ଗ
ଭୁଲିଗଲା ଭୁଲିଗଲା ନିଜର ଅଙ୍ଗ
ଦେବେ ତ ଦେବେ ତ ଆସ ହେ ନନ୍ଦ
କରିବା ଗୋ କରିବା ଗୋ ବେଦମ ରଙ୍ଗ ।
ମୟୂର ମୟୂରୀ ଅହିବେ ଖେଦ
ପିକ ପିକୀ ସରୁ ଗୀତ ଶୁଭିବ ବନ୍ଧ
ରାଧିକା ଗହଣେ ସହସ୍ର ସଖୀ
ମୁହିଁ ଥିବି ମୁହିଁ ଥିବି ତାହାର ସଙ୍ଗ ।
ବିପଦ ବାଧାର ନ ଥିବ ଡର
ଭୁଲିଯାଇ ଭୁଲିଯାଇ ସଂସାର ସାର
ମଜ୍ଜିବି ମଜ୍ଜିବି ଅମିୟ ଜଳେ
କି କହିଲ କି କହିଲ କହିବ କାହର ।

